# ଶ୍ରୀବତ୍ସ ଆତ୍ମଚରିତ



ସଂକଳକ : ପଣ୍ଡିତ ବୀରେନ୍ଦ୍ର କୁମାର ପଣ୍ଡା

# ଶ୍ରୀବତ୍ସ-ଆତ୍ମଚରିତ

ସଙ୍କଳକ– ପଣ୍ଡିତ ବୀରେନ୍ଦ୍ର କୁମାର ପଣ୍ଡା

ସମ୍ପାଦକ– ବେଦ ପୀୟୂଷ, କୁଆଁସ, ଭଦ୍ରକ, ୭୫୬୧୦୦

ପ୍ରକାଶକ— ଶ୍ରୀବତ୍ସ ଗୋରକ୍ଷାଶ୍ରମ ଟ୍ରଷ୍ଟ
ତନରଡ଼ା, ଭଞ୍ଜନଗର, ଗଞ୍ଜାମ

ମୁଦ୍ରଣ– ଶ୍ରୀ ପ୍ରେସ୍, ଭଦ୍ରକ

ତୃତୀୟ ସଂସ୍କରଣ– ୧୯୯୪

ମୂଲ୍ୟ– ୧୫-୦୦ ( ପନ୍ଦର ଟଙ୍କା ମାତ୍ର )



# *Sribatsha Atmacharita*

Edited by— **Pandit Veerendra Panda**

Editor— **Veda Peeyusha**
Kuans, Bhadrak, 756100

Printed at— **Sree Press, Bhadrak**

*PRICE* – **15-00**

ଶ୍ରୀବତ୍ସ ଆତ୍ମଚରିତ –

# ଉତ୍ସର୍ଗ

ସଂସ୍କାରକ ଶ୍ରୀବତ୍ସ ପଣ୍ଡାଙ୍କ ମହତ୍ ଚିନ୍ତାର ସାକାର ରୂପଦାତା, କର୍ମଠ
ଆର୍ଯ୍ୟ ସମାଜୀ, ଶ୍ରୀବତ୍ସ ଗୋରକ୍ଷାଶ୍ରମର ସନ୍ଧକାଳୀ ବ୍ୟବସ୍ଥାପକ,
ନିରଭିମାନୀ, ମିତଭାଷୀ, ଶ୍ରୀବତ୍ସ ପଣ୍ଡାଙ୍କ ଅନନ୍ୟ ଭକ୍ତ ଓ
ସମଗ୍ର ଜୀବନ ଆର୍ଯ୍ୟ ସମାଜ ପାଇଁ ଉତ୍ସର୍ଗୀକୃତ, ଗଞ୍ଜାମ
ମଣ୍ଡଳ ବାଲିପଦର ନିକଟସ୍ଥ ଗ୍ରାମରେ ଜନ୍ମ ନେଇଥିବା
ସେହି ମହାନ୍ ବ୍ୟକ୍ତି

**ସ୍ୱର୍ଗୀୟ ଅନ୍ତର୍ଯ୍ୟାମୀ ଭୋଳ** ଙ୍କ

ସ୍ମୃତି ଉଦ୍ଦେଶ୍ୟରେ ଶ୍ରୀବତ୍ସ ଆତ୍ମଚରିତ ଉତ୍ସର୍ଗ କରି
ଶ୍ରୀବତ୍ସ ଗୋରକ୍ଷାଶ୍ରମ ଟ୍ରଷ୍ଟ କୃତଜ୍ଞ ।

ଶ୍ରୀବତ୍ସ ଗୋରକ୍ଷାଶ୍ରମ ଟ୍ରଷ୍ଟ
ତନରଡ଼ା, ଭଞ୍ଜନଗର, ଗଞ୍ଜାମ ।

# ପ୍ରାକ୍ କଥନୀ

ଋଷି ମୁନି ବିଭୂଷିତ, ଶାଶ୍ୱତ ଚିନ୍ତନ ପ୍ରସାରକ। ଆର୍ଯ୍ୟାବର୍ତ୍ତ ଭୂମି ଆଧ୍ୟାତ୍ମିକ ଦୃଷ୍ଟିରେ ସର୍ବାଗ୍ର ପୂଜ୍ୟା ଓ ଚରିତ୍ର ନିର୍ମାଣ ଦାୟିତ୍ୱ ନିର୍ବାହିକା ରୂପେ ପରିଚିତ ଥିଲା । ପରିପକ୍ୱ ବିଦ୍ୱାନ୍ ମାନଙ୍କ ଅଭାବରେ ଦେଶର ସଂସ୍କୃତି ପତନ ହେଲା ଓ ଆମେ ବିଦେଶୀମାନଙ୍କ ଦ୍ୱାରା ଶାସିତ ହେଲେ । ଅନ୍ୟସ୍ୱାର୍ଥୀ ବିଦ୍ୱାନ୍‌ଗଣ ଲୋକୈଷଣା ପ୍ରବୃତ୍ତିରେ ଶାସ୍ତ୍ର ବିଚାରକୁ କଦର୍ଥ କଲେ ଓ ସତ୍ୟ ସ୍ଥାନରେ ଅସତ୍ୟ ଶାସ୍ତ୍ରର ପ୍ରଚାର ହେଲା । ଲୋକେ ଆନ୍ତରିକ ଶୁଦ୍ଧତାକୁ ଭୁଲିଯାଇ ବାହ୍ୟ ପବିତ୍ରତାକୁ ମୁଖ୍ୟ ମାନିଲେ । ଯାହାର ଫଳ ସ୍ୱରୂପ ପ୍ରତିଭା ସ୍ଥାନରେ ପ୍ରତିମା ଓ ଚରିତ୍ର ସ୍ଥାନରେ ଚିତ୍ର ମଣ୍ଡନ କଲା । ଏହିପରି ଅନେକ ଧାର୍ମିକ କୁବିଚାରର ଶୁଦ୍ଧତା ପାଇଁ ଯୁଗକର୍ତ୍ତା ଭାବେ ଋଷି ଦୟାନନ୍ଦଙ୍କର ଜନ୍ମ । ସେ ବ୍ରାହ୍ମଣ ପରିବାରରେ ଜନ୍ମ ଗ୍ରହଣ କରିଥିଲେବି ବେଦାଦିଶାସ୍ତ୍ର ଅଧ୍ୟୟନ ପୂର୍ବକ ପ୍ରଚଳିତ ପ୍ରତିମା ପୂଜା, ମୃତକ ଶ୍ରାଦ୍ଧ, ଜନ୍ମଗତ ଜାତି ବ୍ୟବସ୍ଥା ଆଦି ଅନେକ କୁସଂସ୍କାର ବିରୁଦ୍ଧରେ ଶାସ୍ତ୍ରୀୟ ଯୁକ୍ତି ଉପସ୍ଥାପନ କଲେ । ସେ ସମୟରେ ଅନେକ ଲୋକ ତାଙ୍କ ମତକୁ ଗ୍ରହଣ କରିବାକୁ ଯତ୍ନ କରିଥିଲେ ଓ ଏହି ଚିନ୍ତା ଏକ ଆଧ୍ୟାତ୍ମିକ କ୍ରାନ୍ତି ରୂପ ନେଇଥିଲା । ସତ୍ୟର ଗ୍ରହଣ ସମୟ ସାପେକ୍ଷ ହୋଇଥିଲେ ବି ସତ୍ୟ ଅପ୍ରକାଶିତ ହୁଏନା ।

ପୌରାଣିକ ବିଚାରଧାରା ନିସ୍ପୃତ ଉତ୍କଳ ରାଜ୍ୟରେ ବେଦାଦି ସତ୍ ଶାସ୍ତ୍ରର ପ୍ରମାଣ ପୂର୍ବକ ଏସବୁ ଚିନ୍ତା ଚେତନାକୁ ନିରାଧାର କହିବା ଏକ

କଷ୍ଟସାଧ୍ୟ କାର୍ଯ୍ୟ । ମାତ୍ର ସେହି ଅତ୍ୟାସସାଧ୍ୟ ପ୍ରଚେଷ୍ଟାକୁ ସଫଳ କରାଇଥିଲେ ସଂସ୍କାରକ ଶ୍ରୀବତ୍ସ ପଣ୍ଡା । ଗଞ୍ଜାମ ଜିଲ୍ଲାର ମନ୍ଦର ଗ୍ରାମରେ ୧୮୭୦ ଅକ୍ଟୋବର ଏକ ତାରିଖରେ ଜନ୍ମ ନେଇଥିବା ଏହି ମହାମାନବ ନିଜର ଜୀବନକାଳ ମଧ୍ୟରେ ନାରୀଶିକ୍ଷା, ବେଦାଦି ଶାସ୍ତ୍ରର ପ୍ରଚାର, ବିଧବା ବିବାହ ପ୍ରଚଳନ ଓ ଗୋରକ୍ଷା ପାଇଁ ଗୋଶାଳା ପ୍ରତିଷ୍ଠା ଆଦି କାର୍ଯ୍ୟକର ବିଚାରବାନ୍ ମାନଙ୍କ ପାଖରେ ଯେପରି ଶ୍ରଦ୍ଧଣୀୟ ହୋଇଥିଲେ କୁସଂସ୍କାରୀ ଅନ୍ଧ ପରମ୍ପରା ଯୁକ୍ତ ଉଦରମ୍ଭରୀ ଶାସ୍ତ୍ର ପ୍ରକ୍ଷିପ୍ତକାରୀ ମାନଙ୍କ ଭୟର କାରଣ ହୋଇଥିଲେ । ନିଜର ସ୍ୱଳ୍ପ ଆୟୁ ମଧ୍ୟରେ ବିଭିନ୍ନ ପତ୍ର ପତ୍ରିକା ପ୍ରକାଶ କରିବା ସହ ନାରୀଶିକ୍ଷା ଆଦି କାର୍ଯ୍ୟରେ ବହୁ ଅନୁଷ୍ଠାନ ନିର୍ମାଣ କରିଥିଲେ । ନିଜର ସଂଘର୍ଷମୟ ଜୀବନକୁ ଦେଶ ଓ ଜାତି ପାଇଁ ଉତ୍ସର୍ଗ କରି ସେ ୧୯୪୩ ମସିହା ମଇ ୧୧ ତାରିଖରେ ଇହ ଜଗତରୁ ବିଦାୟ ନେଲେ । ସମୟ ସ୍ରୋତରେ ଅନେକ ଲୁପ୍ତ ହୋଇଥିଲେ ବି ତାଙ୍କ ପ୍ରତିଷ୍ଠିତ ଅନୁଷ୍ଠାନ ମାନଙ୍କ ମଧ୍ୟରୁ ଶ୍ରୀବତ୍ସ ଗୋରକ୍ଷାଶ୍ରମ ଓ ଆର୍ଯ୍ୟକନ୍ୟା ଗୁରୁକୁଳ ତନରଡ଼ା (ଗଞ୍ଜାମ) ଠାରେ ଅଦ୍ୟାବଧି ତାଙ୍କୁ ସ୍ମରଣ କରାଇବାରେ ଯତ୍ନଶୀଳ । ସଂସ୍କାରକଙ୍କ ବିଦାୟ ପରେ ପରବର୍ତ୍ତୀ ବଂଶଧରମାନେ ତାଙ୍କର ସ୍ମୃତିକୁ ସୁରକ୍ଷିତ କରିବା ପାଇଁ ଉଦ୍ୟମରତ । ସେହି ମହାନ୍ ସଂସ୍କାରକଙ୍କ ଜୀବନ ଚରିତ ଆମକୁ ପ୍ରେରଣା ଦେବ, ଏଥିପାଇଁ ଏହି ଉଦ୍ୟମ ।

୧୯୫୩ ମସିହାରେ ପ୍ରଥମ ସଂସ୍କରଣ ଶ୍ରୀ ରଙ୍ଗାଧର ଆର୍ଯ୍ୟଙ୍କ ଦ୍ୱାରା ଓ ୨ୟ ସଂସ୍କରଣ ୧୯୭୨ ମସିହାରେ ପୂଜ୍ୟ ସ୍ୱାମୀ ବ୍ରହ୍ମାନନ୍ଦ ସରସ୍ୱତୀଙ୍କ ପ୍ରଚେଷ୍ଟାରେ ଲୋକ ଲୋଚନକୁ ଆସିଥିଲା । ଏହା ମଧ୍ୟରେ ଅନେକ

ସମସ୍ତ ସରିଯାଇଛି । ବହୁ ଲୋକଙ୍କ ପାଖରେ ସଂସ୍କାରକଙ୍କ ଜୀବନ ଚରିତ ନାହିଁ । ଏଣୁ ଏହାର ପୁନଃ ମୁଦ୍ରଣ ପାଇଁ ସଂସ୍କାରକଙ୍କ ୧୨୫ ତମ ଜୟନ୍ତୀରେ (୧୮୭୦ ରୁ ୧୯୯୫) ଚେଷ୍ଟା କରାଗଲା । ମ୍ୟାନେଜିଂ ଟ୍ରଷ୍ଟି ଭାବେ ଏହି କାର୍ଯ୍ୟର ସଫଳତା ପାଇଁ ବେଦ ପୀୟୂଷର ସଂପାଦକ ବୀରେନ୍ଦ୍ର ପଣ୍ଡାଙ୍କୁ ଆତ୍ମଚରିତ ପ୍ରକାଶନର ଦାୟିତ୍ୱ ଦିଆଗଲା । ସେହି ଦାୟିତ୍ୱର ସଫଳତା ହିଁ ଏହି ୩ୟ ସଂସ୍କରଣ । ଶ୍ରୀବତ୍ସ ଗୋରକ୍ଷାଶ୍ରମ ଟ୍ରଷ୍ଟ ପକ୍ଷରୁ ପ୍ରକାଶିତ ଏହି ଆତ୍ମଚରିତ ଅଧ୍ୟୟନରେ ଯଦି ଜଣେ ସଂସ୍କା-ରକଙ୍କ ଚରିତ୍ର ଅନ୍ୟକୁ ସତ୍ୟ ଶାସ୍ତ୍ର ପ୍ରତି ଅନୁପ୍ରାଣିତ କରାଇବ ତେବେ ଶ୍ରମ ସାର୍ଥକ ହେବ । ସାଧକର ଅଭାବ ହେଲେ ସାଧନା ଆମକୁ ଆଲୋକ ଦେଖାଇବ । ସଂସ୍କାରକ ଶ୍ରୀବତ୍ସ ପଣ୍ଡାଙ୍କ ସାଧନା ଆମକୁ ସତ୍ୟ ପ୍ରତି ଅନୁପ୍ରାଣିତ କରାଇବାରେ ସହାୟ କରାଉ ଏତିକି ମାତ୍ର ଈଶ୍ୱରଙ୍କ ଠାରେ ପ୍ରାର୍ଥନା ।

ଇତ୍ୟୋମ୍

**ସ୍ୱାମୀ ବ୍ରହ୍ମାନନ୍ଦ ସରସ୍ୱତୀ**
ଟ୍ରଷ୍ଟି, ଶ୍ରୀବତ୍ସ ଗୋରକ୍ଷାଶ୍ରମ ଟ୍ରଷ୍ଟ
ତନରଡ଼ା, ଭଞ୍ଜନଗର, ଗଞ୍ଜାମ

ଅକ୍ଟୋବର ୧୯୯୫
ଶ୍ରୀବତ୍ସ ଜୟନ୍ତୀ

# ଶ୍ରୀବତ୍ସ ଗୋରକ୍ଷାଶ୍ରମ, ତନରଡ଼ା
## ଟ୍ରଷ୍ଟବୋର୍ଡ ପୁନର୍ଗଠନ

ତାରିଖ- ୭-୭-୧୯୯୦

ଆମ୍ଭେ ଶ୍ରୀ ସ୍ୱାମୀ ବ୍ରହ୍ମାନନ୍ଦ ସରସ୍ୱତୀ, ଗୁରୁ ୰ ସ୍ୱାମୀ ଅଭେଦାନନ୍ଦ ସରସ୍ୱତୀ, ବୟସ ୭୨ ବର୍ଷ, ମେନେଜିଂ ଟ୍ରଷ୍ଟି ଶ୍ରୀବତ୍ସ ଗୋରକ୍ଷାଶ୍ରମ, ମୁ: ପୋ:- ତନରଡ଼ା, ଜି- ଗଞ୍ଜାମ, ୧୯୬୧ ରୁ ଆମ୍ଭେ ଟ୍ରଷ୍ଟ ବୋର୍ଡର ସଭ୍ୟ ଓ ୧୯୭୦ ଅକ୍ଟୋବର ୧ ତାରିଖରୁ ଶ୍ରୀବତ୍ସ ଶତବାର୍ଷିକୀ ଅବସରରେ ମେନେଜିଂ ଟ୍ରଷ୍ଟି ରୂପେ କାର୍ଯ୍ୟ କରି ଆସୁଅଛୁଁ ।

ବର୍ତ୍ତମାନକୁ ଆମ୍ଭର ବୟସ ୭୨ ବର୍ଷ । ବାର୍ଦ୍ଧକ୍ୟ ହେତୁ ଶ୍ରୀବତ୍ସ ଗୋରକ୍ଷାଶ୍ରମର ସର୍ବାଙ୍ଗ ଉନ୍ନତି ପାଇଁ କାର୍ଯ୍ୟକ୍ଷମ ନୋହୁଁ । ଏଣୁ ସହଯୋଗୀ ରୂପେ ପ୍ରତିଷ୍ଠାତା ୰ ଶ୍ରୀବତ୍ସ ପଣ୍ଡାଙ୍କର ନ୍ୟାସ ପତ୍ର ରେଜେଷ୍ଟ୍ରି ନଂ ୪୦୮/୪୨ ତା ୧୯-୬-୪୨ ମୁତାବକ ମୋତେ ଯେଉଁ କ୍ଷମତା ଦିଆଯାଇଛି, ଯେହି କ୍ଷମତା ବଳରେ ଆମ୍ଭେ ନିମ୍ନୋକ୍ତ ୪ ଜଣ ସଭ୍ୟଙ୍କୁ ମନୋନୀତ କରିଅଛୁଁ ।

### ମନୋନୀତ ଟ୍ରଷ୍ଟିଙ୍କର ନାମ ଓ ଧାମ

୧- ଶ୍ରୀ ପ୍ରତାପ ଚନ୍ଦ୍ର ପଟ୍ଟନାୟକ, ବୟସ- ୭୭ ବର୍ଷ
ପିତା ୰ ଲକ୍ଷ୍ମୀନାରାୟଣ ପଟ୍ଟନାୟକ
ଗ୍ରାମ/ପୋ:- ତନରଡ଼ା, ଜି- ଗଞ୍ଜାମ

୨- ଶ୍ରୀମତୀ ନର୍ମଦା ପଟ୍ଟନାୟକ, ବୟସ- ୪୧ ବର୍ଷ
ପିତା ୰ ସତ୍ୟବାଦୀ ପଟ୍ଟନାୟକ
ହେଡ୍ ମିଷ୍ଟ୍ରେସ୍, ଆର୍ଯ୍ୟକନ୍ୟା ଗୁରୁକୁଳ, ତନରଡ଼ା, ଗଞ୍ଜାମ

୩- ଶ୍ରୀ ବାଲ୍ମୀକି ପଟ୍ଟନାୟକ, ବୟସ- ୪୪ ବର୍ଷ
ପିତା ୰ ଲକ୍ଷ୍ମୀନାରାୟଣ ପଟ୍ଟନାୟକ
ମୁ- ଗୁଡ଼ପଲ୍ଲୀ, ପୋ- କଣବାଗ, ଜି- ଗଞ୍ଜାମ

୪- ଶ୍ରୀ ଆର୍ଯ୍ୟ କୁମାର ଜ୍ଞାନେନ୍ଦ୍ର, ବୟସ - ୩୨ ବର୍ଷ
ପିତା- ଶ୍ରୀ ନଟବର ସିଂହ
ପ୍ରଧାନାଧ୍ୟ- ଗୁରୁକୁଳ ବୈଦିକ ଆଶ୍ରମ
ଗ୍ରା/ପୋ:- ବେଦବ୍ୟାସ, ରାଉରକେଲା, ଜି- ସୁନ୍ଦରଗଡ଼

ମୁ/ପୋ-ତନରଡ଼ା, ଜି-ଗଞ୍ଜାମ ବଶମ୍ବଦ

ଶ୍ରାବଣ ପୂର୍ଣ୍ଣିମା **ସ୍ୱାମୀ ବ୍ରହ୍ମାନନ୍ଦ ସରସ୍ୱତୀ**

ତା ୭-୭-୧୯୯୦ ମ୍ୟାନେଜିଂ ଟ୍ରଷ୍ଟି, ଶ୍ରୀବତ୍ସ ଗୋରକ୍ଷାଶ୍ରମ

ଉପର ଲିଖିତ ସ୍ୱାମୀ ବ୍ରହ୍ମାନନ୍ଦ ସରସ୍ୱତୀଙ୍କ ଇଚ୍ଛାନୁଯାଇ ଏବଂ ୭-୭-୧୯୯୦ ର ପ୍ରସ୍ତାବାନୁଯାୟୀ ଏକ ଏଫିଡେଭିଟ୍ ୧୮-୭-୧୯୯୦ରେ ସ୍ଥାନୀୟ ଭଞ୍ଜନଗର Executive Magistrate ଙ୍କ କୋର୍ଟରେ ସମ୍ପନ୍ନ କରାଗଲା । ସେହି ଏଫିଡେଭିଟ୍ ବଳରେ ଶ୍ରୀ ବାଲ୍ମୀକି ପଟ୍ଟନାୟକଙ୍କୁ ଟ୍ରଷ୍ଟ ବୋର୍ଡର ସମ୍ପାଦକ ରୂପେ ମନୋନୀତ କରାଗଲା ।

ସୁଖର କଥା ଏବର୍ଷ ଶ୍ରୀବତ୍ସ ପଣ୍ଡାଙ୍କର ୧୨୫ ତମ ଜୟନ୍ତୀ ଅବସରରେ ଏକ ଯଜ୍ଞଶାଳା ଏବଂ ଶ୍ରୀବତ୍ସ ଜୀବନୀ ସହ ସଂସ୍କାର ସଙ୍ଗୀତାବଳୀ ପ୍ରକାଶ ପାଉଛି ।

ଶ୍ରୀମତୀ ଓମ୍‌ବତୀ ଦେବୀ ( କଲିକତା ) ଙ୍କ ଦାନରେ ଯଜ୍ଞଶାଳା ନିର୍ମାଣ କରାଯାଉଥିବାରୁ ଆମେ ତାଙ୍କଠାରେ କୃତଜ୍ଞ ଓ ଏହି ନିର୍ମାଣରେ ସ୍ୱାମୀ ସିଚ୍ଚିଦାନନ୍ଦ ବାନପ୍ରସ୍ଥୀ, ରଘୁନାଥ ଦୋରା ଓ ଶ୍ରୀ ସନ୍ନ୍ୟାସୀ ପ୍ରଧାନଙ୍କ ଅବଦାନ ଅତୁଳନୀୟ । ସଂସ୍କାରକଙ୍କ ୧୨୫ ତମ ଜୟନ୍ତୀରେ ସମସ୍ତଙ୍କୁ କୃତଜ୍ଞତା ଜଣାଉଛି ।

**ଶ୍ରୀ ବାଲ୍ମୀକି ପଟ୍ଟନାୟକ**
ସମ୍ପାଦକ
ଶ୍ରୀବତ୍ସ ଗୋରକ୍ଷାଶ୍ରମ, ତନରଡ଼ା, ଗଞ୍ଜାମ

# ଅଭିମତ

ମହାନ୍ ସଂସ୍କାରକ ସ୍ୱର୍ଗତ ଶ୍ରୀବତ୍ସ ପଣ୍ଡାଙ୍କର ଆତ୍ମଚରିତ ୧୯୭୨ ମସିହାରେ ଗୁରୁକୁଳ ବେଦବ୍ୟାସ ମୁଦ୍ରଣାଳୟରୁ ସ୍ୱାମୀ ବ୍ରହ୍ମାନନ୍ଦ ସରସ୍ୱତୀଙ୍କ ପ୍ରଯତ୍ନରୁ ମୁଦ୍ରଣ ହୋଇଥିଲା । ଏହା ମଧ୍ୟରେ ଅନେକ ବର୍ଷ ବିତି-ଯାଇଛି ଓ ଏହାର ପୁନଃ ପ୍ରକାଶନ ଆବଶ୍ୟକତା ଥିଲା । ସଂସ୍କାରକଙ୍କ ୧୨୫ ତମ ଜୟନ୍ତୀ ଅବସରରେ ପୁସ୍ତକର ପୁନଃ ମୁଦ୍ରଣ ପାଇଁ ଶ୍ରୀବତ୍ସ ଗୋରକ୍ଷାଶ୍ରମ ଟ୍ରଷ୍ଟ ପକ୍ଷରୁ ଏହି ଦାୟିତ୍ୱ ପୂଜ୍ୟ ସ୍ୱାମୀଜୀ ମୋତେ ଦେଇଥିଲେ । ଆଦେଶ ପାଳନ ପୂର୍ବକ ଉକ୍ତ କାର୍ଯ୍ୟ ସମ୍ପାଦନା କରିଛି । ପୁସ୍ତକଗତ ସାମାନ୍ୟ ତ୍ରୁଟି ଥିବା ଅସମ୍ଭବ ନୁହେଁ । ସୁଧୀ ପାଠକଗଣ ଏହି ଆତ୍ମଚରିତ ପାଠକରି ମହାନ୍ ସଂସ୍କାରକଙ୍କ ସଂସ୍କାରକୁ ଧାରଣ କରିପାରିଲେ ଶ୍ରମ ସାର୍ଥକ ହେବ । ଏହି ପ୍ରକାଶନ ପାଇଁ ତଥା ବୈଦିକ ବିଶ୍ୱର ପ୍ରବେଶ ପାଇଁ ପ୍ରେରଣାଦାତା ପୂଜ୍ୟ ଗୁରୁ ସ୍ୱାମୀ ପ୍ରଣବାନନ୍ଦ ସରସ୍ୱତୀଙ୍କ ଠାରେ ମୋର ସନମ୍ର ପ୍ରଣତି ଜଣାଉଛି । ଆଶା କରୁଛି ଉତ୍କଳର ସୁଧୀ ପାଠକଗଣ ସଂସ୍କାରକଙ୍କ ଜୀବନ ଚରିତରୁ ନିଜର ଜୀବନ ଗଠନର କିଛି ସାଧନ ପାଇବାକୁ ସମର୍ଥ ହେବେ । ପ୍ରଭୁ ସମସ୍ତଙ୍କୁ ଶୁଭବୁଦ୍ଧି ଦିଅନ୍ତୁ ଏତିକି ମାତ୍ର ପ୍ରାର୍ଥନା ।

ଇତ୍ୟୋମ୍

**ପଣ୍ଡିତ ବୀରେନ୍ଦ୍ର କୁମାର ପଣ୍ଡା**
ସମ୍ପାଦକ- ବେଦ ପୀୟୂଷ
ବେଦ ଭବନ, କୁଆଁସ, ଭଦ୍ରକ,୭୫୬୧୦୦

# —ବଂଶ ପରିଚୟ—

ଉତ୍କଳ ଦେଶର ଦକ୍ଷିଣାଞ୍ଚଳରେ ଗଞ୍ଜାମ ଜିଲ୍ଲା ଅନ୍ତର୍ଗତ ଘୁମୁସର ତାଲୁକାରେ ମନ୍ଦାର ଗ୍ରାମରେ ଗୋବର୍ଦ୍ଧନ ପଣ୍ଡା ନାମକ କେହି ବ୍ୟକ୍ତି ପ୍ରଥମେ ଆସି ନିବାସ କରିଥିଲେ ।

ଗୋବର୍ଦ୍ଧନ ପଣ୍ଡାଙ୍କ ୩ ପୁତ୍ର— ୧- ଶିବ ପଣ୍ଡା, ୨- ବୈକୁଣ୍ଠ ପଣ୍ଡା, ୩- ଯମ ପଣ୍ଡା । ଶିବ ପଣ୍ଡାଙ୍କର ୨ ପୁତ୍ର, ଧର୍ମ ଓରଫ ଦାଶରଥି ଓ ପ୍ରହ୍ଲାଦ । ବୈକୁଣ୍ଠ ପଣ୍ଡାଙ୍କର ୪ ପୁତ୍ର ଥିଲେ । ୧- ନୀଳମଣି, ୨- ବ୍ରଜସୁନ୍ଦର, ୩- ବାସୁଦେବ, ୪- କ୍ଷେତ୍ରବାସୀ । ଧର୍ମ ପଣ୍ଡାଙ୍କ ଧର୍ମପତ୍ନୀଙ୍କ ତୃତୀୟ ଗର୍ଭରୁ ମୋର ଜନ୍ମ; ନାମ ଶ୍ରୀହରି । ପ୍ରହ୍ଲାଦ ପଣ୍ଡାଙ୍କର ୨ ପୁତ୍ର, ୧- ଗଙ୍ଗାପାଣି ୨- କାଶୀନାଥ । ବ୍ରଜସୁନ୍ଦର ପଣ୍ଡାଙ୍କର ୨ ପୁତ୍ର ନାରାୟଣ ଓ ହରିହର । କ୍ଷେତ୍ରବାସୀ ପଣ୍ଡାଙ୍କର ୨ ପୁତ୍ର ଜାତ ହୋଇଥିଲେ । ସେମାନଙ୍କର ବାଲ୍ୟାବସ୍ଥାରେ ମୃତ୍ୟୁ ହେଲା । ନୀଳମଣି ପଣ୍ଡା ଓ ବାସୁଦେବ ପଣ୍ଡା ନିଃସନ୍ତାନ ଥିଲେ । ନୀଳମଣି ପଣ୍ଡାଙ୍କର ଦତ୍ତପୁତ୍ର ହେଲେ ନାରାୟଣ ପଣ୍ଡା । ବାସୁଦେବ ପଣ୍ଡାଙ୍କର ଦତ୍ତପୁତ୍ର ହେଲେ କାଶୀନାଥ ପଣ୍ଡା । ମୋର ପିତା ଧର୍ମ ପଣ୍ଡାଙ୍କ ଦ୍ୱିତୀୟା ପତ୍ନୀଙ୍କ ଗର୍ଭରେ ଜାତ ହେଲେ ନରସିଂହ ପଣ୍ଡା, ପୁଣି ଅପୁତ୍ରିକ କ୍ଷେତ୍ରବାସୀ ପଣ୍ଡାଙ୍କ ପାଇଁ ମୁଁ ଦତ୍ତପୁତ୍ର ରୂପେ ଗୃହୀତ ହେଲି । ( ବଂଶଲତା ପରପୃଷ୍ଠାରେ ଦେଖନ୍ତୁ ) ।



ଗୋବର୍ଦ୍ଧନ ପଣ୍ଡା
ଶିବ ପଣ୍ଡା
ବୈକୁଣ୍ଠ ପଣ୍ଡା
ରାମ ପଣ୍ଡା
ଧର୍ମ ଓରଫ ଦାଶରଥି ପ୍ରହରାଜ
( ୨ ପତ୍ନୀ ଥିଲେ )
ପ୍ରଥମା ଠାରୁ
ଦ୍ୱିତୀୟା ଠାରୁ
ଝିଅ
ଝିଅ
ଶ୍ରୀବତ୍ସ
କ୍ଷେତ୍ରବାସୀଙ୍କ
ଦତ୍ତପୁତ୍ର ହେଲେ
ନରସିଂହ ପଣ୍ଡା
ଗଙ୍ଗାପାଣି
କାଶୀନାଥ
(ଦତ୍ତପୁତ୍ର ହେଲେ)
ନୀଳମଣି
ବ୍ରଜସୁନ୍ଦର
ନାରାୟଣ
(ଦତ୍ତପୁତ୍ର
ହେଲେ)
ହଳଧର
(ଦତ୍ତପୁତ୍ର
ହେଲେ)
ବାସୁଦେବ
କାଶୀନାଥଙ୍କ
ଦତ୍ତପୁତ୍ର
କ୍ଷେତ୍ରବାସୀ
ପ୍ରଥମର ମୃତ୍ୟୁ
ତୃତୀୟର ମୃତ୍ୟୁ
ଶ୍ରୀବତ୍ସ ଦତ୍ତପୁତ୍ର ହୋଇଆସିଲେ

ଆମ୍ଭମାନଙ୍କର ପିତୃଲୋକ ଧର୍ମ ପଣ୍ଡାଦି ଛ' ଭାଇ ଶକ୍ତିଶାଳୀ ଓ କାର୍ଯ୍ୟକୁଶଳ ଥିଲେ । ଧର୍ମ ପଣ୍ଡା ଅଧିକ ଧାର୍ମିକ, ଶାନ୍ତ ପ୍ରକୃତି, ପରିଶ୍ରମୀ ଓ କଷ୍ଟସହିଷ୍ଣୁ ଥିଲେ । ମଧୁମଣି ପଣ୍ଡା ଓ ବାସୁଦେବ ପଣ୍ଡା ଅଧିକ ଧୈର୍ଯ୍ୟଶାଳୀ ଓ ଉପାର୍ଜନ ପଟୁ ଥିଲେ । ବ୍ରଜସୁନ୍ଦର ପଣ୍ଡା ଅଧିକ ବୁଦ୍ଧିମାନ୍ ବୋଲି ଲୋକେ କହନ୍ତି । ପ୍ରହରାଜ ପଣ୍ଡା ଓ କ୍ଷେତ୍ରବାସୀ ପଣ୍ଡା ଅଳ୍ପ ବୟସରେ ପରଲୋକ ପ୍ରାପ୍ତ ହୋଇଥିଲେ । ଜ୍ୟେଷ୍ଠଭ୍ରାତା ଧର୍ମ ପଣ୍ଡା ଅନ୍ୟ ସବୁ ଭାଇ-ମାନଙ୍କ ଠାରୁ ଅଧିକ କାଳ ବଞ୍ଚିଥିଲେ । ଅନ୍ୟ ସବୁ ଭାଇମାନେ ୪୦।୫୦ ବର୍ଷ ବୟସରେ ମୃତ ହେଲେ । ସବୁ ଶେଷରେ ୭୫ବର୍ଷ ବୟସରେ ୧୮୯୭ ଖ୍ରୀଷ୍ଟାବ୍ଦରେ ଧର୍ମ ପଣ୍ଡାଙ୍କର ପରଲୋକ ପ୍ରାପ୍ତ ହେଲା । ବାସୁଦେବ ପଣ୍ଡା ତାହାଙ୍କ ସମୟରେ ଅତ୍ୟନ୍ତ ସୁଖ୍ୟାତ ଥିଲେ । ସେ ଭୂମ୍ରସର ରାଣୀଙ୍କର ବ୍ୟବହାର ବୁଝୁଥିଲେ ଓ ତାଙ୍କ ଠାରୁ ପଟ୍ଟଯୋଷୀ ଉପାଧି ପାଇଥିଲେ । ଭୂମ୍ରସର ତାଲୁକାରେ ମନ୍ଦାର ଗ୍ରାମର ପଣ୍ଡାଘର ନାମରେ ଏହି ପରିବାର ଅତ୍ୟନ୍ତ ସୁଖ୍ୟାତ, ଧନବନ୍ତ ଓ ସମ୍ଭ୍ରାନ୍ତ ଥିଲା । ତିନ ପୁରୁଷରୁ ଏହି ପରିବାର ଏକାନ୍ନବର୍ତ୍ତୀ ଥିଲା ।

ଆମର ଶୈଶବଦଶାରେ ଆମ୍ଭେମାନେ ବିଭକ୍ତ ହେଲୁ । ୧- ନାରାୟଣ ପଣ୍ଡା ୨- ଗଙ୍ଗାପାଣି ପଣ୍ଡା ୩- ହରିହର ପଣ୍ଡା ୪- ଶ୍ରୀବତ୍ସ ପଣ୍ଡା ୫- କାଶୀନାଥ ପଣ୍ଡା ୬- ନରସିଂହ ପଣ୍ଡା ଏହିଭଳି ୬ଟି ପରିବାର ଆମ୍ଭମାନଙ୍କର ହେଲା ।

-o-

# —ଶୈଶବ—

୧୮୭୦ ଖ୍ରୀଷ୍ଟାବ୍ଦ ଅକ୍ଟୋବର ଏକ ତାରିଖ (ତଦନୁସାରେ) ୧୭୯୧ ଶକାବ୍ଦ କନ୍ୟା ୧୭ ଦିନ ଆଶ୍ୱିନ କୃଷ୍ଣ ଏକାଦଶୀ ଶୁକ୍ରବାର ଦିନ ପିତା ଧର୍ମ ଚଣ୍ଡୀଙ୍କ ଔରସରେ ମାତା ରାଧାଦେବୀଙ୍କ ଗର୍ଭରୁ ମୋର ଜନ୍ମ । ୨୨ ବର୍ଷ ପର୍ଯ୍ୟନ୍ତ ମାତା ଗର୍ଭଧାରଣ ନ କରିବାରୁ ମୋର ପିତା ମାତା ସନ୍ତାନ ପ୍ରାପ୍ତି ଆଶା ଛାଡ଼ିଥିଲେ । ଦୈବାନୁକୂଳରୁ ପ୍ରଥମେ ଦୁଇଟି କନ୍ୟା ଓ ତତ୍ପରେ ମୋର ଜନ୍ମ ହେଲା । ପୁତ୍ର ସନ୍ତାନ ଆଶାରେ ମୋର ପିତା ବ୍ରାହ୍ମଣ ଓ ବୈଷ୍ଣବ ମାନଙ୍କ ଦ୍ୱାରା ବହୁ ଧର୍ମ କର୍ମ କରାଇଥିଲେ ଓ ବହୁ କାୟକ୍ଳେଶ ସହ୍ୟ କରିଥିଲେ । ସେମାନଙ୍କର ଏହିଭଳି ତପସ୍ୟାବଳରୁ ମୋର ଜନ୍ମ ବୋଲି ଲୋକେ କହନ୍ତି । ମୋର ମା' ୨୨ ବର୍ଷ ପରେ ମୋତେ ଗର୍ଭରେ ଧାରଣ କରିଥିବା ହେତୁ କେତେ ଲୋକମାନେ ମୋତେ ବାଇଶି ବର୍ଷିଆ ବୋଲି ବି କହିଥାଆନ୍ତି । ମୋତେ ଦୁଇ ବର୍ଷ ବୟସ ହେଲେ ମୋର ମା'ଙ୍କ ଦେହାନ୍ତ ହୋଇଗଲା । ସେହି ଦିନ ଠାରୁ ମୁଁ ପିତୃକର୍ତ୍ତୃକ ଲାଳିତ ପାଳିତ ହୋଇଆସିଲି । ଫୁଲ ନାମ୍ନୀ ନାମରେ ମୋର ଜଣେ ପିଉସୀ ଥାଆନ୍ତି । ସେ ମୋର ରକ୍ଷଣାବେକ୍ଷଣରେ ବେଶ୍ ପ୍ରାଣପଣେ ଲାଗିଥାଆନ୍ତି ।

-୦-

## —ବିଦ୍ୟାଶିକ୍ଷା—

ଆମ୍ଭ ଗ୍ରାମରେ ଗ୍ରାମ୍ୟଶିକ୍ଷକ ଅବଧାନଙ୍କର ଯେଉଁ ଚାଟଶାଳୀ ଥିଲା ତହିଁରେ ମୋର ଅଧ୍ୟୟନ ଆରମ୍ଭ ହେଲା । ଚାଟଶାଳୀରେ ଚାଟଶାଳୀ ନିୟମ ଅନୁସାରେ କୋଠା, ଧାରୁ, ଦଶରୁ, ପଞ୍ଚବଣିକ, ସପ୍ତବଣିକ ଇତ୍ୟାଦି ଶିଖିଲି । ଚାଟଶାଳୀରେ ହେଉ କିମ୍ବା ବାହାରେ ହେଉ ଚାଟଶାଳୀର ପିଲା ବା ଛାତ୍ରମାନେ ଅବଧାନଙ୍କ ଜନାଶୁଣାରେ କିଛି କ୍ରୀଡ଼ା କୌତୁକ, ଆମୋଦ ପ୍ରମୋଦ କରି-ପାରନ୍ତି ନାହିଁ । ପିଲାମାନେ ଚାଟଶାଳୀକୁ କାରାଗୃହ ଓ ଅବଧାନଙ୍କୁ ଯମ ପରି ମନେ କରନ୍ତି । ଦୁଷ୍ଟ ପିଲାମାନଙ୍କ ସଙ୍ଗରେ ପଡ଼ି କେତେ ଦିନ କେତେକ ପ୍ରକାର ଦୁଷ୍ଟାମି କରିଥିଲି । ଦିନକର କଥା ମୋର ମନେ ପଡୁଛି । ଯୋଗୀ ନାମରେ ଗୋଟିଏ ପିଲା ଥରେ ଗୋଟିଏ ଅରଖ ଫଳ ଆଣି ଆମ୍ଭମାନଙ୍କୁ ତାହା ହୀରା କଦଳୀ ବୋଲି କହିଲା ଏବଂ ତାହା ଭକ୍ଷଣ କଲେ ଅବଧାନେ ମରିଯିବେ ବୋଲି ମଧ୍ୟ କହିଲା । ଆଖୁର ଭିତରେ ହୀରା କଦଳୀ ଦେଇ ଅବଧାନଙ୍କୁ ଖୁଆଇଦେବା ସ୍ଥିର ହେଲା । ଅନ୍ୟ କେହି ଛାତ୍ର ପ୍ରସ୍ତାବ ଦେଲା ଯେ ରାତ୍ରି ବେଳେ ଘର ଉପରେ ଚୂଳ କଣାକରି ଗୋଟିଏ ଶାବଳ ପକାଇଦେବା ଯେ ଅବଧାନେ ମରିଯିବେ ।

କ୍ଷେତ୍ରପାଳ ନାମରେ ଜଣେ ସହପାଠୀ ମୋର ସଙ୍ଗାତ ହୋଇ ଥିଲେ । ସଙ୍ଗାତଙ୍କୁ ଉକ୍ତ କୁମନ୍ତ୍ରଣା ବିଷୟ ଯେବେ ମୁଁ ଗୋଟିଏ

ପତ୍ର ଲେଖିଥିଲି । ଏହି ଚଠି ଖଣ୍ଡିକ ଧରାପଡ଼ି ଯିବାରୁ ଆମ୍ଭମାନ-ଙ୍କର ସବୁ କୁମନ୍ତ୍ରଣା ପଦାରେ ପଡ଼ିଗଲା । ଯେଉଁ ପିଲା ଆପଣା ଘରୁ ଆମ୍ବର, ଆମ୍ବୁଲ, ଆଳୁ,ବାଇଗଣ ଇତ୍ୟାଦି ଲୁଚାଇ ଚୋରାଇ ଆଣି ଅବଧାନଙ୍କୁ ଦେଉଥାଏ, ଅବଧାନଙ୍କର ତା' ପ୍ରତି ଟିକିଏ ଦୟାଦୃଷ୍ଟି ବା ପକ୍ଷପାତ ଥାଏ । ଏହିପରି କିଛିକାଳ ଚାଟଶାଳୀ ଶିକ୍ଷାପରେ ଉସୁଲକୁଣ୍ଡା ଠାରୁ ତେଲଗୁ ଏବଂ କିଛି ଇଂରାଜୀ ଜାଣି-ଥିବା ଜଣେ ବ୍ୟକ୍ତି ମାଷ୍ଟର ରୂପେ ନିଯୁକ୍ତ ହୋଇ ଆମ୍ଭମାନଙ୍କୁ କିଛି ଇଂରାଜୀ ଓ ତେଲଗୁ ଶିକ୍ଷା ଦେଉଥିଲେ । ତାଙ୍କ ନାଁ ମଦପାଲ୍ଲି ରାମମୂର୍ତ୍ତି ପଟ୍ଟନାୟକ । ତେଲଗୁ ହିଁ ଏହି ଓଡ଼ିଶା ଦେଶର ଗଞ୍ଜାମରେ ରାଜଭାଷା ରୂପେ ଗୃହୀତ ହୋଇଥିଲା । କେହି ଜଣେ ତେଲଗୁରେ ଦସ୍ତଖତ କରିପାରିଲେ ଆପଣାକୁ ଶିକ୍ଷିତ, ଉପଯୁକ୍ତ ବା ବଡ଼ଲୋକ ବୋଲି ମନେ କରୁଥିଲା । ପିତାମାତା ନିଜର ପିଲାଙ୍କୁ ସ୍ବରଅକ୍ଷର ତେଲଗୁ ଶିଖାଇ ଦେବାକୁ ମନ କରିଥାଆନ୍ତି । ଇଂରାଜୀ ଲେଖି ପଢ଼ି ଜାଣିଲେତ ଆହୁରି ବଡ଼ କଥା, କିନ୍ତୁ ଇଂରାଜୀ ପ୍ରତି କେହି ସାହସ କରିପାରନ୍ତି ନାହିଁ ।

ଆମ୍ଭ ଗ୍ରାମ ନିକଟବର୍ତ୍ତୀ ବେଲଗୁଣ୍ଠା ଗ୍ରାମରେ କତିପୟ ସ୍ଥାନୀୟ ଲୋକଙ୍କ ଯତ୍ନରେ ଏକ ଇଂରାଜୀ ସ୍କୁଲ ବସିଲା । କରି ବଳରାମ ଦାସ ନାମକ ଜଣେ ତେଲଙ୍ଗା ଲୋକ ଶିକ୍ଷକ ନିଯୁକ୍ତ ହେଲେ । ଏହି ସ୍କୁଲରେ ମୁଁ ଏକବର୍ଷ ପଢ଼ାଶୁଣା କରିଥିଲି ।

ମୋହର ଖୁଡ଼ୁତା ପୁଅ ଭାଇ ଗଙ୍ଗାପାଣି ପଣ୍ଡା ଓ ହରିହର ପଣ୍ଡା ରସୁଲକୁଣ୍ଡା ଯାଇ ସ୍କୁଲରେ ଇଂରାଜୀ ପଢ଼ୁଥିବା ଦେଖି ମୋର ମଧ୍ୟ ସେଠାକୁ ଯାଇ ପଢ଼ିବା ଇଚ୍ଛା ହେଲା । ବିଦ୍ୟା ଶିକ୍ଷାରେ ଲାଭ ଜାଣିପାରି ଯେ ପଢ଼ିବା ଇଚ୍ଛା ଜନ୍ମିଥିଲା ତାହା ନୁହେଁ, ରସୁଲ-କୁଣ୍ଡାରେ ପଢ଼ୁଥିବା ଛାତ୍ରମାନେ ଇସ୍ତ୍ରି ହୋଇଥିବା ଧୋବଲୁଗା, କୋଟ୍, କୁରୁତା ପିନ୍ଧନ୍ତି, ଯୋତା ଲଗାନ୍ତି, ଛତା ଧରନ୍ତି । ଏମାନଙ୍କର ଏହି ବେଶଭୂଷା ଦେଖି ରସୁଲକୁଣ୍ଡା ଯାଇ ପଢ଼ିବା ଇଚ୍ଛା ହେଲା । ପିତାଙ୍କର ଏହି ଇଚ୍ଛା ଥିଲା ଯେ ପୁତୁରାମାନେ ଇଂରାଜୀ ପଢ଼ୁଛନ୍ତି, ମୋ ପୁଅ ମଧ୍ୟ ସେମାନଙ୍କ ପରି ପଢ଼ି କିଛି ଇଂରାଜୀ ବିଦ୍ୟା ଶିକ୍ଷା କରୁ । ଜଜେଇମାନଙ୍କ ଅନୁରୋଧକ୍ରେ ପିତାଙ୍କ ଠାରୁ ଟଙ୍କା, ପଇସା, ଗୁଡ଼ାକ, ଡ଼ାଲି ଇତ୍ୟାଦି ଧରି ଯାଇ ରସୁଲକୁଣ୍ଡା ଠାରେ ପଢ଼ିବାକୁ ଆରମ୍ଭ କଲି ।

୧୮୮୭ ଖ୍ରୀଷ୍ଟାବ୍ଦରେ ମୁଁ ରସୁଲକୁଣ୍ଡା ଯାଇ ଗଭର୍ଣ୍ମେଣ୍ଟ ମିଡ଼ିଲ୍ ସ୍କୁଲରେ ତୃତୀୟ ଶ୍ରେଣୀରେ ସବୁ ପ୍ରଥମେ ପ୍ରବେଶ କଲି । ସେତେବେଳକୁ ମୋହର ବୟସ ପ୍ରାୟ ୧୭ ବର୍ଷ । ତତ୍ପୂର୍ବରୁ ଉପନୟନବିଧି, ସନ୍ଧ୍ୟା ପୂଜାଦି ଦୈବୀ କର୍ମରେ ମୋହର ବିଶେଷ ପ୍ରବୃତ୍ତି ଜନ୍ମିଥିଲା । କୌଣସି ଶାସନୀ ବ୍ରାହ୍ମଣ ଠାରୁ ଅଭିଧାନରୁ କେତେ ବର୍ଷ ମାତ୍ର ଶିକ୍ଷାକରି ସୂକ୍ତ, ସ୍ତୋତ୍ର, ପୂଜାବିଧି ପ୍ରଭୃତି କେତେକ କର୍ମକାଣ୍ଡ ମୁଖସ୍ଥ କରି ନୈଷ୍ଠିକ ଭାବରେ କାର୍ଯ୍ୟ କରୁ-ଥିଲି । ଆମ୍ଭ ଘରେ ଜଗନ୍ନାଥ, ରାଧାକୃଷ୍ଣ, ଲକ୍ଷ୍ମୀନାରାୟଣ ଏବଂ

ନାନାବିଧ ଶାଳଗ୍ରାମ ଶିଳା ସେବିତ ଥାଆନ୍ତି । ମୁଁ ନିତ୍ୟ ପ୍ରାତଃସ୍ନାନ ସାରି ଏହି ଦେବତା ମାନଙ୍କର ସେବାପୂଜା କରି ସ୍ତୁତି ପାଠ ଓ ଜପ ଧ୍ୟାନରେ ଏକ ଘଣ୍ଟା ସମୟ ବ୍ୟୟ କରୁଥାଏ । ସମୟେ ସମୟେ ଯଥା ସମୟରେ ଭୋଜନକୁ ନ ଯାଇ ଜପ ଧ୍ୟାନରେ ବସିଥିବା ଦେଖି କେହି କେହି ଭଉଣୀମାନେ କହୁଥାନ୍ତି, "ଭାତ ଖାଇବାକୁ ନ ଆସି ବୁଢ଼ାଙ୍କ ପରି ବସି କେତେ ଜପ କରୁଅଛୁ" । ସାଧାରଣ ଲୋକଙ୍କର ଧାରଣା ଯେ କେବଳ ବୟୋବୃଦ୍ଧ ଲୋକମାନେ ଜପ ତପ ଇତ୍ୟାଦି ଧର୍ମ କାର୍ଯ୍ୟରେ ଲାଗନ୍ତି । ବାଲ୍ୟ ଚାଞ୍ଚଲ୍ୟ ବା ଯୌବନ ମଦରେ ଏହି ନୈଷ୍ଠିକ ଭାବ ବର୍ଦ୍ଧିତ ହୁଏ ନାହିଁ ।

ରସୁଲକୁଣ୍ଡା ଠାରେ ଇଂରାଜୀ ସ୍କୁଲରେ ପଢ଼ୁଥିବା ବେଳେ ମଧ୍ୟ ବିଦ୍ୟାର ଅଧିଷ୍ଠାତା ଦେବ ଗଣେଶଙ୍କୁ ଆରାଧନା କରି ବହୁଅକ୍ଷର ମନ୍ତ୍ର ଜପ କରୁଥିଲି । ତୃତୀୟ ଶ୍ରେଣୀ ପାଠଆରମ୍ଭ ଠାରୁ ମିଡ଼ିଲ ସ୍କୁଲ ପରୀକ୍ଷା ପାସ୍ କଲା ପର୍ଯ୍ୟନ୍ତ ନିର୍ବିଘ୍ନରେ ଅବିଚ୍ଛିନ୍ନକ୍ରମେ ବିଦ୍ୟାଶିକ୍ଷା ଚାଲିଲା । ପ୍ରତ୍ୟେକ ଶ୍ରେଣୀରେ ପ୍ରାୟ ସବୁଥର ପ୍ରଥମ ସ୍ଥାନ ପାଉଥାଏ । ପ୍ରତ୍ୟେକ ବର୍ଷର ପରୀକ୍ଷା ଅତି ଉଚ୍ଚରେ ପାଶ କରି ଅବଶେଷରେ ମିଡ଼ିଲ୍ ସ୍କୁଲ ପରୀକ୍ଷାରେ ପ୍ରଥମ ଶ୍ରେଣୀରେ ପାସ କଲି । ସେତେବେଳେ ମୋର ସ୍ମରଣ ଶକ୍ତି ଖୁବ୍ ଭଲ ଥିଲା । କେଶୀ ନ ପଢ଼ିଲେ ମଧ୍ୟ ଯାହା ଥରେ ପଢ଼ିଦେଲେ ମନେ ରହିଯାଏ । ଏହା ସବୁ ବହୁଅକ୍ଷର ମନ୍ତ୍ର ଜପର ପ୍ରଭାବ

ବୋଲି ମୋହର ଧାରଣା ଥିଲା । ବାଲ୍ୟାବସ୍ଥାରେ ଅନ୍ୟାନ୍ୟ ମାନସିକ ଚିନ୍ତା ନ ଥିବାରୁ ଏକାଗ୍ରତା ହେତୁ ସ୍ମରଣଶକ୍ତିର ଉତ୍କର୍ଷ ଥାଏ । ଏହି କଥାଟା ସେତେବେଳେ ଭାବିପାରି ନ ଥିଲି ।

ରସୁଲକୁଣ୍ଡାଠାରେ ମତେ ପୂର୍ଣ୍ଣ ୩ ବର୍ଷ ରହି ବିଦ୍ୟାଶିକ୍ଷା କରିବାକୁ ପଡ଼ିଥିଲା । ଏହି ସମସ୍ତ ମଧ୍ୟରେ ମୋର କୌଣସି ଦୁଷ୍ଟାମି ବା ଅସଦ୍‌ସଙ୍ଗ ହୋଇନାହିଁ । ତେବେ କୌଣସି ଏକ ବ୍ୟକ୍ତିର ମନ୍ତ୍ରଣାରେ ପଡ଼ି ତାହାଙ୍କ ସଙ୍ଗରେ ଏକ ବେଶ୍ୟା ଘରକୁ ଯାଇଥିଲି । ବେଶ୍ୟା ସହବାସ ଏହାହିଁ ମୋର ପ୍ରଥମଥର । ସେଠାରେ ଭୟ ଓ ଲଜ୍ଜାବଶତଃ ସେହି ଭ୍ରଷ୍ଟା କାମିନୀ କେତେ ପ୍ରଲୋଭନ ଦେଖାଇଲେ ହେ ମୁଁ ଉକ୍ତ ପାଶବିକ କାର୍ଯ୍ୟ ପରିଗ୍ରହଣାରେ କୃତକାର୍ଯ୍ୟ ହୋଇ ନପାରି ସେଠାରୁ ବାହାରି ଆସିଥିଲି । ସେହି ଦିବାବଧି ସ୍ତ୍ରୀ ସହବାସରେ କିଛି ସାହସ ଜନ୍ମିଲା । ଆଉ ଏକ ଦିନ ରସୁଲକୁଣ୍ଡାଠାରୁ ମନ୍ଦାର ଯିବା ମାର୍ଗରେ ଏକ ବ୍ୟଭିଚାରିଣୀ ସ୍ତ୍ରୀର ବଶୀଭୂତ ହୋଇ ମୋର ସ୍ଖଳନ ଘଟିଥିଲା । ପ୍ରକାଶ୍ୟ ରାଜପଥରେ କଳଙ୍କିନୀ ବେଶ୍ୟାର ଅବସ୍ଥିତି କପରି ଆପତ୍ତିଜନକ ତାହା ମୋର ଏହି ଘଟଣାରୁ ପ୍ରତିପନ୍ନ ହୁଏ । ଏହି ସ୍ଖଳନ ପରେ ମୁଁ ଅତ୍ୟନ୍ତ ଅନୁତାପ ଭୋଗ କରିଥିଲି ।

-o-

## —ବିବାହ—

ମୁଁ ତୃତୀୟ ଶ୍ରେଣୀରେ ପଢ଼ୁଥିବା ବେଳେ ପ୍ରାୟ ୧୮ ବର୍ଷ ବୟସ ସମୟରେ ମୋର ବିବାହ ହୋଇଥିଲା । ଆଠଗଡ଼ ପୋଲସରା ଗ୍ରାମ ମଦନେଶ୍ୱର ଦାଶଙ୍କ ଏକମାତ୍ର କନ୍ୟା ସୁନା ସହିତ ମୋହର ବିବାହ ହେଲା । ଶ୍ୱଶୁର ଗୃହଠାରୁ ତାଙ୍କର ଆହାର ବ୍ୟବହାରରେ ମଧ୍ୟ ଲଜ୍ଜା କରିବା ଆମ ସମାଜରେ ଏକ ପ୍ରକାର ଶିଷ୍ଟାଚାର । ଅନେକ ସମୟରେ ଶ୍ୱଶୁର ଘରଠାରେ ଜାମାତାକୁ ଆପଣର ପୂର୍ଣ୍ଣ ଆହାର ନ କରି ଶୀର୍ଣ୍ଣକାୟ ହୋଇ ଘରକୁ ଫେରିବାକୁ ପଡ଼ିଥାଏ । ଏହି ଶିଷ୍ଟାଚାର ପାଳନରେ ମୁଁ କେବେହେଁ ମନଯୋଗୀ ନଥାଏ, ମୋର ପ୍ରୟୋଜନାନୁସାରେ ଆହାର କରିବାକୁ ମୁଁ କିଞ୍ଚିମାତ୍ର ଲଜ୍ଜା ବୋଧ କରି ନଥାଏ । ଆମ ଦେଶରେ ଶାଶୂ ଶ୍ୱଶୁର, ଜ୍ୱାଇଁ ପୁଅକୁ ଖୁଆଇ ପିଆଇ ଲାଳନ ପାଳନ କରନ୍ତି । ଏପରି କି ଅନେକ ସମୟରେ ଅତିରିକ୍ତ ପରିମାଣରେ ଖୁଆଇ ପିଆଇ କିଶୋର ଜ୍ୱାଇଁ ପୁଅର ଅନିଷ୍ଟ ସାଧନ କରି ଥାଆନ୍ତି । ସମାଜର ସାଧାରଣ ନିୟମାନୁସାରେ ସେତେବେଳେ ବାଳକ ୧୨ ବର୍ଷରୁ ବଳିଗଲେ ବୁଢ଼ାବର ବୋଲି ଲାଞ୍ଛିତ ହୁଏ । ଜ୍ୱାଇଁ ପିଲାଟି ଯେତେ ସାନ ହେଲେ ସେତେ ସୁନ୍ଦର ଦେଖାଯାଏ । ବୟଃପ୍ରାପ୍ତ ସୁଶିକ୍ଷିତ, କାର୍ଯ୍ୟକ୍ଷମ ଏବଂ ପରିବାର ଭାର ବହନକ୍ଷମ ପୁରୁଷ

ଆସି ଯୁବତୀ କନ୍ୟାର ପାଣି ଗ୍ରହଣ କରି ତାକୁ ସାଙ୍ଗରେ ଆପଣା ଗୃହକୁ ଚାଲିଯିବା ଦୃଶ୍ୟ । ଏହି ହତଭାଗ୍ୟ ବ୍ରାହ୍ମଣ ସମାଜର ସ୍ୱପ୍ନରେ ସୁଦ୍ଧା ଦେଖାଯାଏ ନାହିଁ ।

-୦-

## —ଉଚ୍ଚ ଶିକ୍ଷା—

୧୮୮୯ ଖ୍ରୀଷ୍ଟାବ୍ଦରେ ମୁଁ ମିଡ଼ଲସ୍କୁଲରୁ ପାସକରି ବ୍ରହ୍ମପୁର ଗଲି । ସେଠାରେ କଲେଜରେ ପାଞ୍ଚବର୍ଷ ପର୍ଯ୍ୟନ୍ତ ଅଧ୍ୟୟନ କଲି । ଆମ୍ଭେମାନେ ସେତେବେଳେ ବଜାପୁରଠାରେ ବସା-କରିଥାଉ । ନର୍ମାଲସ୍କୁଲ ଶିକ୍ଷକ ପଣ୍ଡିତ ଶ୍ରୀଯୁକ୍ତ ଭଗବାନ ରଥ ବଜାପୁର ନିବାସୀ ଓଡ଼ିଶା ଛାତ୍ରମାନଙ୍କର ଅଭିଭାବକ ଥାଆନ୍ତି । ସେ ଓଡ଼ିଆ ସାହିତ୍ୟ ଏବଂ ନାନାବିଧ ନୀତିଶିକ୍ଷା ଦେଇଥାନ୍ତି । ସେ ମହାଶୟଙ୍କଠାରେ ମୁଁ ଆଜୀବନ ଋଣୀ । ତାହାଙ୍କର ସତ୍‌ଶିକ୍ଷା ମୋହର ମାନସପଟରେ ଚିରକାଳ ଅଙ୍କିତ ରହି ମୋର ଜୀବନ ଯାତ୍ରା ନିର୍ବାହରେ ଅଶେଷ ଉପକାର କରିଅଛି । ମୋର ସହାଧ୍ୟାୟୀଙ୍କ ମଧ୍ୟରେ ଟଙ୍କରପୁର ନିବାସୀ ବ୍ରଜସୁନ୍ଦର ପଟ୍ଟନାୟକ ଓ କାନିଏଲ ବାବୁଙ୍କ ପୁଅ ସୋମସୁନ୍ଦର ମହାନ୍ତି ମୋର ସ୍ନେହୀ ଥିଲେ । ସେମାନଙ୍କ ସହିତ ମୋର ଅନ୍ତର ମିଳନ ଥିଲା ।

ବ୍ରହ୍ମପୁର ଠାରେ ମାଟ୍ରିକୁଲେସନ ଶ୍ରେଣୀରେ ପଢୁଥିବା ବେଳେ ସମାଜ ଓ ତାହାର ନିୟମାବଳୀ ପ୍ରତି ମୋର ମନ

କ୍ରମଶଃ ଆକୃଷ୍ଟ ହେଲି । ମୋର ମୁଣ୍ଡରେ ବହୁତ ବାଳ ଥାଏ । କେଶ ବିନ୍ୟାସ ସକାଶେ ବହୁ ସମୟ ଅଯଥା ନଷ୍ଟ ହୁଏ ଏବଂ ଅନେକ ଅସୁବିଧା ଭୋଗ କରିବାକୁ ପଡ଼େ । ଶିରଗ୍ରଭାଗରେ କେଶଶିଖା ରଖିବା ହିନ୍ଦୁ ମାନଙ୍କର ଏକ ସାମାଜିକ ନିୟମ । ସ୍ୱଳ୍ପମାତ୍ର ଶିଖା ରଖି ମୁଁ ମୋହର ବାଳ ସବୁ କାଟି ପକାଇଲି । ମୋହର ପିତା ଅତି ଯତ୍ନରେ ମୋର ଏହି ବାଳ ବଢ଼ାଇଥିଲେ । ବାଳ କାଟି ପକାଇବା ଦେଖି ସେ ଅତ୍ୟନ୍ତ ଦୁଃଖିତ ହୋଇଥିଲେ । ସେ କାଳରେ ଲୋକେ ଲଣ୍ଡା ହେଉ ନ ଥିଲେ । କେବଳ ତେଲକୁ ଝଡ଼ି, ହାତରେ ଝଡ଼ି ପ୍ରଭୃତି ବ୍ୟବହାର କରୁଥିଲେ । ଏବେ ଆଉ ସେ କଥା ନାହିଁ । ଇଂରେଜୀ ପଢ଼ୁଆ ସହରବାସୀ କିମ୍ବା ଅଶିକ୍ଷିତ ମଫସଲବାସୀ ସମସ୍ତେ ବାଳ କାଟି ପକାନ୍ତି । ଲଣ୍ଡା ହେବାହିଁ ଆଜିକାଲି ଶୋଭା ଓ ସଭ୍ୟତାର ଚିହ୍ନ । ଶିକ୍ଷିତ ବଙ୍ଗ ଓ ଆନ୍ଧ୍ରବାସୀଙ୍କର ବେଶଭୂଷା, ଝୁଡ଼ିମାତ୍ର ଦେଖି ଓଡ଼ିଆଙ୍କ ନିଜସ୍ୱ ବେଶଭୂଷା ପ୍ରତି ମୋ ମନରେ ଘୃଣା ଜନ୍ମିଲା ଓ ଏହାର ସଂସ୍କାର କରିବାକୁ ଇଚ୍ଛା ଜାତ ହେଲା । ସେତେବେଳେ ମୁଁ ଏବଂ ମୋର ସଙ୍ଗୀମାନେ ସମାଜ ସଂସ୍କାର ବିଷୟରେ ଯାଇ ଘରେ ଘରେ ଦାଣ୍ଡ ଚଉଁଶାରେ ଗ୍ରାମେ ଗ୍ରାମେ ସଭା କରି ନାନାବିଧ ପ୍ରସ୍ତାବ କରୁଥିଲୁ ଓ ପ୍ରଚଳିତ ରୀତି ନୀତିର ଖାଲି ପ୍ରତିବାଦ କରୁଥିଲୁ । ଆମ୍ଭମାନଙ୍କର ସମାଜରେ ପ୍ରଚଳିତ ଓଷା, ବ୍ରତ, ଉପନୟନ, ବିବାହ, ପୂଜା, ଆରାଧନା ପ୍ରଭୃତି ରୀତି ନୀତିର ଅଳୀକତା ହୃଦୟଙ୍ଗମ କରି ସେ ସବୁର ସଂସ୍କାର କରିବାକୁ ମଧ୍ୟ ମନ ଉତ୍କଣ୍ଠିତ ହେଲା ।

ଶିକ୍ଷା, ସଭ୍ୟତା ମାନସିକ ଉନ୍ନତି, ଶାସ୍ତ୍ରେକ ବଳ ଇତ୍ୟାଦି ବିଷୟ୍ଗୁ ଧେନ ଅନେକ ସମୟରେ ଦୁଇ ସମିତ କରି ତର୍କ ବିତର୍କ କରୁଥିଲି । ସୁରାପାନ ଟ୍ରିକ ଯେଉଁ ଆନ୍ତରିକ ଘଟଣା ଥିଲା ତାହା କ୍ରମଶଃ ବିବେଚିତ ହେଲା ପୁଣି ଔଷଧାର୍ଥେ ସୁରାପାନ ଅକର୍ତ୍ତବ୍ୟ ନୁହେଁ ବୋଲି ଭାବୁ ଭାବୁ ବୁଝଙ୍ଗରେ ବଡ ଆମୋଦ ଓ ପ୍ରମୋଦାର୍ଥେ ମଦ ପିଇବା ପର୍ଯ୍ୟନ୍ତ ଗଲି । ଏହି ମଦ୍ୟପାନ ସଭ୍ୟତା କେବଳ ଇଂରେଜୀ ଶିକ୍ଷାରୁ ଜାତ ହୁଏ ବୋଲି କହିବା ଠିକ୍ ନୁହେଁ. କାରଣ ମୁଁ ଜାଣେ, ଅଣୁମାତ୍ର ଇଂରେଜୀ ନପଢିଥିବା ଅନେକ ରକ୍ଷଣଶୀଳ ବ୍ରାହ୍ମଣ ପଣ୍ଡିତମାନେ ଦେବପୂଜା ନାମରେ ମଦ୍ୟ ସେବନ କରିଥାନ୍ତି । କିନ୍ତୁ ଏହି ପୂଜାବିଧି ଅତ୍ୟନ୍ତ ଗୋପନୀୟ ଭାବରେ ଚଳେ ।

ଶିକ୍ଷା ନିମନ୍ତେ ମୋତେ ବ୍ରହ୍ମପୁରଠାରେ ୫ ବର୍ଷ ରହିବାକୁ ପଡିଥିଲା । ସେତେବେଳେ ଅଧ୍ୟୟନ ଏକମାତ୍ର କଠୋର ତପସ୍ୟା ଥିଲା । ସଦାଳାପ, ସଚ୍ଚିନ୍ତା ଓ ସାଧୁ ସଙ୍ଗରେ କାଳ ଅତିବାହିତ ହେଉଥିଲା । ୧୮୯୪ ଖ୍ରୀଷ୍ଟାବ୍ଦରେ ବ୍ରହ୍ମପୁର କଲେଜରୁ ଏଫ୍. ଏ. ପରୀକ୍ଷାରେ ପାଶ୍ କରି ବି: ଏ: ପଢ଼ିବା ନିମନ୍ତେ ରାଜମହେନ୍ଦ୍ରୀ ଯିବାକୁ ପଡ଼ିଲା । ସେତେବେଳେ ରାଜ-ମହେନ୍ଦ୍ରୀଠାରୁ ଜୟପୁର ନଗର ପର୍ଯ୍ୟନ୍ତ ରସ୍ତା ଖୋଲା ହୋଇଥିଲା । ତେଣୁ ଗୋପାଳପୁର ଠାରୁ ବିଶାଖାପାଟଣା ପର୍ଯ୍ୟନ୍ତ ଜାହାଜରେ ଏବଂ ସେଠାରୁ ରେଳଗାଡ଼ି ରାଜମହେନ୍ଦ୍ରୀ ଗଭର୍ଣ୍ଣମେଣ୍ଟ କଲେଜରେ

ଦୁଇବର୍ଷ ପଢ଼ିବାକୁ ହେଲା । ବଗରବର ଘର ଓ ମୁଁ ଦୁହେଁ ମିଶି ଏକ ବସାରେ ଥାଉଁ । କୃଷ୍ଣଚଣ୍ଡୀ ନାମରେ ଜଣେ ବ୍ୟକ୍ତି ଆମର ପାଚକ ଭାବରେ ନିଯୁକ୍ତ ଥାଆନ୍ତି । ପରେ ଦଳବଣ୍ଟାନିବାସୀ ନାରାୟଣ ପଣ୍ଡା ଆମର ପାଚକରୂପେ ନିଯୁକ୍ତ ହେଲେ ।

ଗଞ୍ଜାମଜିଲ୍ଲା ଦକ୍ଷିଣାତ୍ୟରେ ଅନ୍ଧ୍ର ପ୍ରଦେଶାନ୍ତର୍ଗତ । ଆନ୍ଧ୍ର ବ୍ରାହ୍ମଣମାନେ ଆମିଷଭୋଜୀ ନୁହନ୍ତି । ଆମିଷଭୋଜୀ ବ୍ରାହ୍ମଣ ମାନେ ଏମାନଙ୍କ ଦୃଷ୍ଟିରେ ଅବ୍ରାହ୍ମଣ । ଆମ୍ଭମାନଙ୍କୁ ଅନେକ ସମୟରେ ଗୋପନରେ ମାଛ ମାଂସ ରନ୍ଧନ କରିବାକୁ ହୋଇ-ଥାଏ । ଆମିଷ ଭକ୍ଷଣ ବ୍ରାହ୍ମଣ ପକ୍ଷରେ ଗର୍ହିତ ପାପ କର୍ମ ବୋଲି ଥିବା ଧାରଣା ଇଂରାଜୀ ଶିକ୍ଷା ପ୍ରଭାବରେ ଆନ୍ଧ୍ର ଛାତ୍ରମାନଙ୍କ ମନରୁ କ୍ରମଶଃ ଦୁରୀଭୂତ ହେଉଥିଲା । କଲେଜ ବନ୍ଧୁଗଣ ଅନେକ ଆନ୍ଧ୍ର ବ୍ରାହ୍ମଣ ଛାତ୍ରମାନେ ବସାରେ ଅପ୍ରକାଶ୍ୟ ଭାବରେ ମାଛ, ମାଂସ ଖାଇ ଶିଖି ସାରିଥିଲେ । ବ୍ରହ୍ମପୁର କଲେଜରେ ଏଫ୍. ଏ: ଶ୍ରେଣୀ ଛାତ୍ର ଥିବାବେଳେ ଶ୍ରୀଯୁକ୍ତ ଗୋବିନ୍ଦ ନାଥ ଗୁହ ଏମ. ଏ. କଲେଜର ପ୍ରିନସିପାଲ ଥିଲେ । ତାଙ୍କର ଉଦାରତା ଓ ଦର୍ଶନ-ଶାସ୍ତ୍ରରେ ପାଣ୍ଡିତ୍ୟ ଦେଖି ଅନେକ ମୁଗ୍ଧ ହେଉଥିଲେ । ଥରେ ଉତ୍କଳ ଓ ଆନ୍ଧ୍ର ଛାତ୍ରମାନଙ୍କ ମଧ୍ୟରେ ଆମିଷ ଭକ୍ଷଣ ନେଇ ବାଦାନୁବାଦ ହେଲା । ସେତେବେଳେ ପ୍ରିନସିପାଲ ଗୋବିନ୍ଦ ନାଥ ବାବୁ ଉତ୍କଳୀୟ ଛାତ୍ରମାନଙ୍କ ପକ୍ଷ ସମର୍ଥନ କରି କହିଥିଲେ, "ଆମିଷ ତ୍ୟାଗ ଲାଗି କେହି ବ୍ରାହ୍ମଣ କିମ୍ବା ଆମିଷ ଭୋଜନ ହେତୁ କେହି ଅବ୍ରାହ୍ମଣ ହୋଇପାରନ୍ତି ନାହିଁ ।

ଯେତେବେଳେ ରାଜମହେନ୍ଦ୍ରୀ କଲେଜରେ ବି. ଏ. ଉପାଧି ପରୀକ୍ଷାରେ ମନୋମିତ ବିଭାଗ ଥିଲା ତିନୋଟି । ୧- ଦର୍ଶନ ୨- ବିଜ୍ଞାନ, ୩- ଗଣିତ । ମୋର ଇତିହାସ ବିଭାଗରେ ଅଧ୍ୟୟନ କରିବାକୁ ପ୍ରବଳ ଇଚ୍ଛା ଥିଲା । କିନ୍ତୁ ଇତିହାସ ଶିକ୍ଷା ବିଭାଗ ନ ଥିବାରୁ ବିଜ୍ଞାନ ଶିକ୍ଷା ବିଭାଗରେ ପ୍ରବେଶ କଲି । ମୋର ରସାୟନିକ ଯନ୍ତ୍ର ଚାଳନରେ ହସ୍ତନୈପୁଣ୍ୟ ନଥିଲା । ଦିନେ ଗୋଟିଏ କାଚନଳୀ ଅଗ୍ନି ତାପରେ ନୁଆଁଇବା ବେଳେ କାଚଟି ଭାଙ୍ଗିଯାଇ ମୋର ଅଙ୍ଗୁଳି ଜଳିଗଲା । ସେହି ପୀଡ଼ା ହେତୁ ମୁଁ ୧୫ ଦିନ କାଳ ଅକର୍ମଣ୍ୟ ହୋଇ ପଡ଼ି ରହିଲି । ଉକ୍ତ ବିଭାଗ ପରିତ୍ୟାଗ କରି ଦର୍ଶନ ବିଭାଗରେ ଶିକ୍ଷା ଆରମ୍ଭ କଲି । ସାହିତ୍ୟ, ବିଜ୍ଞାନ ଓ ଦର୍ଶନପ୍ରତି ମୋର ଶ୍ରଦ୍ଧା ବେଶୀ ଥାଏ ଓ ଗଣିତରେ ଅବଜ୍ଞା ଓ ଅପାରଗତା ଥାଏ । ଅତ୍ୟନ୍ତ ଆଗ୍ରହ ସହକାରେ ବେଦାନ୍ତ ଦର୍ଶନ ଶିକ୍ଷା ଆରମ୍ଭ କଲି । କୌଣସି ବସ୍ତୁ, ଗତ ମତ ନିୟମରେ ତତ୍ତ୍ୱାନୁସନ୍ଧାନରେ ମୁଁ ସାଧାରଣତଃ ବିଶେଷ ଉତ୍ସାହ ସହକାରେ ଶ୍ରମସ୍ୱୀକାର କରିଥାଏ । ସାପ୍ତାହିକ ପରୀକ୍ଷା କଥା ଦୂରେ ଥାଉ ବାର୍ଷିକ ପରୀକ୍ଷା ପ୍ରତି ମଧ୍ୟ ଦୃଷ୍ଟି ନ ରଖି କୌଣସି କଥାର ଦାର୍ଶନିକ ତତ୍ତ୍ୱାନୁସନ୍ଧାନରେ କାଳ ଅତିବାହିତ କରି ପକାଇଥାଏ । ଦର୍ଶନ ବିଭାଗରେ ଶିକ୍ଷକମାନେ ମତେ ଭଲ ପାଉଥିଲେ କୌଣସି ସାପ୍ତାହିକ ପରୀକ୍ଷାରେ ଉଚ୍ଚତମ ନମ୍ବର ରଖିପାରି ନ ଥିଲେହେଁ ମୁଁ ଉଚ୍ଚ ଧରଣର ଦର୍ଶନ ଛାତ୍ର ବୋଲି ଆମ୍ଭ ଶିକ୍ଷକମାନଙ୍କର ଧାରଣା ଥିଲା ।

ନିମ୍ନ ଶ୍ରେଣୀମାନଙ୍କରେ ଯେଉଁ ବାହାର ଆଡ଼ମ୍ବରପ୍ରିୟତା ଓ ବାହ୍ୟଚାପଲ୍ୟ ଦେଖାଯାଏ ଉଚ୍ଚ ଶ୍ରେଣୀଭୁକ୍ତ ହେବାରୁ ଆଉ ତାହା ନ ଥାଏ। କଠୋର ପରିଶ୍ରମ ଓ ସଂଯମ ସହକାରେ ଗମ୍ଭୀର ଭାବ ଅବଲମ୍ବନ କରିବାକୁ ପଡ଼ିଥାଏ। ସେତେବେଳେ ଅଧ୍ୟୟନ ଏକମାତ୍ର ତପସ୍ୟା ଥିଲା। ସଦାଳାପ, ସଚ୍ଚିନ୍ତା ଓ ସାଧୁ ସଙ୍ଗମରେ ମନ ଅଭିବାହିତ ହୁଏ। ଶିକ୍ଷା ଓ ସତ୍‌ସଙ୍ଗ ପ୍ରଭାବରୁ ମନର ସଂକୀର୍ଣ୍ଣତା ଦୂର ହେଉଥାଏ। ଯୌବନ ରାଜ୍ୟରେ ପଦାର୍ପଣ କଲାବେଳେ କଠୋର ତପସ୍ୟା ମଧ୍ୟରେ ସୁଦ୍ଧା ସମୟେ ସମୟେ କୁସଙ୍ଗରେ ପଡ଼ି କୁକର୍ମରେ ପ୍ରବୃତ୍ତି ଜନ୍ମିଥାଏ। ଏହି ପବିତ୍ର ଛାତ୍ର ଜୀବନରେ ମଧ୍ୟ ଅନେକ ପ୍ରକାର ସ୍ଖଳନ ଘଟିଥାଏ।

-✿-

## ସାହିତ୍ୟ ଚର୍ଚ୍ଚା

ମୁଁ ପଞ୍ଚମ ଶ୍ରେଣୀ ବା ପ୍ରି· ମାଟ୍ରିକୁଲେସନ କ୍ଲାସ ଥିବା ଦିନ ଖବର କାଗଜ ଗ୍ରାହକ ହେବାକୁ ଶିଖିଲି। ସବୁ ପ୍ରଥମେ ସମ୍ବଲପୁର "ହିତୈଷିଣୀ" ପାଠ କରୁଥିଲି। ସେତେବେଳେ 'ଇନ୍ଦ୍ରଧନୁ' ଓ 'ବିଜୁଳି' ନାମକ ସାମୟିକ ପତ୍ରିକା ଗୁଡ଼ିକୁ ମଧ୍ୟ ଶ୍ରଦ୍ଧା ସହକାରେ ପଢୁଥାଏ। କ୍ରମେ କ୍ରମେ ଉତ୍କଳର ପ୍ରାୟ କାଗଜ ପାଉଥାଏ। ପୁଣି ସାପ୍ତାହିକ, ମାସିକ ପ୍ରାୟ ସବୁ

କାଗଜରେ ପ୍ରବନ୍ଧ ଲେଖୁଥାଏ । ମୋର ନାନା ସମୟର ନାନା-ବିଧ ପ୍ରବନ୍ଧ ଗୁଡ଼ିକ ଏକ ପୁସ୍ତକ ଆକାରରେ ଗୁମ୍ଫି ରଖିବାପାଇଁ ମୋର ଅନେକ ବନ୍ଧୁ ମତେ ଅନୁରୋଧ କରିଥାଆନ୍ତି । ପରମବନ୍ଧୁ ମାନମଣି ବିଦ୍ୟାରତ୍ନଙ୍କର ଅନୁରୋଧ ବିଶେଷ ଭାବରେ ଥାଏ । କେହି କେହି କହିଥାନ୍ତି ଯେ ମୋର ଏହି ଲେଖାଗୁଡ଼ିକ ବିକ୍ଷିପ୍ତ ଭାବରେ ପଡ଼ିରହି ଯାଉଅଛି । ଖବର କାଗଜ ଲେଖାରେ ସମୟ ଓ ଶକ୍ତି ବୃଥାବ୍ୟୟ କରିଦେବା ଅପେକ୍ଷା କୌଣସି ପୁସ୍ତକ ଲେଖିଲେ ଭଲ ହୁଅନ୍ତା ବୋଲି ଅନେକ ସମୟରେ ଅନେକ ବନ୍ଧୁ ମୋତେ କହିଥାନ୍ତି । ମୋର ଲେଖା ଗୁଡ଼ିକର ଲକ୍ଷ୍ୟ ବିଶେଷ ଭାବରେ ସମାଜ ସଂସ୍କାର ଆଡ଼କୁ ରହିଥାଏ । ସରସ୍ୱତୀ କବି ଫକୀର ମୋହନ, ସାହିତ୍ୟ ସମ୍ପାଦକ ବିଶ୍ୱନାଥ, ଉତ୍କଳ ଏବଂ ଲେଖକ ଗୋପାଳ ଚନ୍ଦ୍ର, ସମ୍ପାଦକ ମାନମଣି, ସଙ୍ଗୀତଜ୍ଞ ଦାମୋଦର ମୋତେ ସଂସ୍କାରକ ଆଖ୍ୟା ଦେଇଥାଆନ୍ତି । ପୁଣି ମୋର ଅନେକ ସଂସ୍କାର ପ୍ରବନ୍ଧମାନ ସମୟେ ଦେଶକାଳପାତ୍ର ଅତିକ୍ରମ କରି ଅତ୍ୟନ୍ତ ଉଗ୍ର, ଉତ୍କଟ ଓ ବୈପ୍ଳବିକ ବୋଲି କହି କେହି କେହି ରକ୍ଷଣଶୀଳ ପଣ୍ଡିତମାନେ ମୋତେ ସଂସ୍କାରକ ଉପାଧି ଦେଇଥାନ୍ତି । ସାମାଜିକ, କୁତ୍ସିତ, କୁତ୍ସିତ ପ୍ରତି ମୁଁ ସର୍ବଦା ତୀବ୍ର ଭାବରେ ଲେଖନୀ ଚାଳନା କରିଥାଏ । ହିନ୍ଦୁ ସମାଜର ଜାତିଭେଦ ବ୍ୟବସ୍ଥା, ବାଲ୍ୟ ବିବାହ ଓ ଅବରୋଧ ପ୍ରଥା ଶିଶୁ ବୈଧବ୍ୟ ପୌରୋହିତ୍ୟ ଅତ୍ୟାଚାର ଇତ୍ୟାଦି ସାମାଜିକ କୁସଂସ୍କାର ପ୍ରତି ମୁଁ ସର୍ବଦା ନିରପେକ୍ଷ ଖଡ୍ଗହସ୍ତ ଥାଏ ।

ମୋର ଛାତ୍ରାବସ୍ଥାରେ ରସୁଲକୁଣ୍ଡା ସ୍କୁଲରୁ ମିଡ଼ଲସ୍କୁଲ ପରୀକ୍ଷାରୁ ଉତ୍ତୀର୍ଣ୍ଣ ହେବାଠାରୁ ବି. ଏ. ଉପାଧି ପରୀକ୍ଷା ପର୍ଯ୍ୟନ୍ତ ମୁଁ ଛାତ୍ରବୃତ୍ତି ପାଉଥିଏ । ମିଡ଼ିଲ ସ୍କୁଲ ପରୀକ୍ଷା ପ୍ରଥମ ଶ୍ରେଣୀରେ ପାସ କରିଥିଲି । ସେତେବେଳେ ମିଡିଲ ସ୍କୁଲ ପାସକୁ ମାଟ୍ରି-କୁଲେସନ ପରୀକ୍ଷା ସହିତ ସମାନ ଧାର୍ଯ୍ୟ ହେଉଥିଲା । ୧୮୮୮ ଖ୍ରୀଷ୍ଟାବ୍ଦରେ ରସୁଲକୁଣ୍ଡା ମିଡଲ ସ୍କୁଲ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବା ଓଡ଼ିଆ ଛାତ୍ରମାନଙ୍କ ମଧ୍ୟରେ ମୁଁ ପ୍ରଥମ ହେବା ଯୋଗୁଁ ମାସିକ ୫ ୭. ୦୦ ହିସାବରେ ଗଭର୍ଣ୍ଣମେଣ୍ଟ ଛାତ୍ରବୃତ୍ତି ଦୁଇ ବର୍ଷ ପାଇଲି । ମାଟ୍ରିକୁଲେସନ ପରୀକ୍ଷାରେ ପାଶ କଲାପରେ ମାସିକ ୧୦ ଟଙ୍କା ଲେଖାଏଁ ଦୁଇବର୍ଷ ବୃତ୍ତି ପାଇଲି । ପୁଣି ଏଫ. ଏ ପାଶ୍ କଲି, କନିକା ରାଜାଙ୍କ ପ୍ରଦତ୍ତ ବୃତ୍ତି ମାସିକ ୨୦ ଟଙ୍କା ଲେଖାଏଁ ଓ ଗଭର୍ଣ୍ଣମେଣ୍ଟ ବୃତ୍ତି ମାସିକ ୧୫ଟଙ୍କା ଏହିପରି ମାସିକ ୩୫ ଟଙ୍କା ଲେଖାଏଁ ଦୁଇବର୍ଷ ବୃତ୍ତି ପାଇଲି ।

ଆମ୍ଭେ ଦୁହେଁ ଅର୍ଥାତ୍ ଖୁଡ଼ୁତା ପୁଅ ଭାଇ ଶ୍ରୀଯୁକ୍ତ ହରିହର ପଣ୍ଡା ଓ ମୁଁ ପ୍ରଥମେ ଇଂରାଜୀ ପଢ଼ା ଆରମ୍ଭ କଲା-ବେଳେ ଆମ୍ଭମାନଙ୍କର ଜଣେଇ ଯେ କି ଆମ୍ଭ ଘରେ ପ୍ରଧାନ ଅର୍ଜକ ଥିଲେ ଆମ୍ଭମାନଙ୍କୁ ଉପହାସ କରି କହୁଥିଲେ "ଏମାନେ ଇଂରାଜୀ ପଢ଼ି ମାଜିଷ୍ଟ୍ରେଟ ହୋଇ ଆମ୍ଭମାନଙ୍କ ବଂଶନାମ ରକ୍ଷା କରିବେ । ଆମ୍ଭମାନଙ୍କୁ ପୋଷି ପକାଇବେ ।" କିନ୍ତୁ ଆମ୍ଭେମାନେ ଯେତେବେଳେ ଛାତ୍ରବୃତ୍ତି ପାଇ ଛାତ୍ର ଜୀବନ ନିର୍ବାହ କରି ପାରିଲୁ,

ଘରୁ ଆଉ ଅର୍ଥ ସାହାଯ୍ୟ ଚାହିଁଲୁ ନାହିଁ ସେତେବେଳେ ଯେ ସହାନୁଭୂତି ଦେଖାଇ ଆମ୍ଭମାନଙ୍କ ବିଦ୍ୟାଶିକ୍ଷାରେ ଶ୍ରଦ୍ଧା ପ୍ରକାଶ କଲେ ଏବଂ ସମୟେ ସମୟେ କିଛି କିଛି ଅର୍ଥ ସାହାଯ୍ୟ କରିଥିଲେ ।

ବିଦ୍ୟା ଶିକ୍ଷା ସମୟରେ ଏପରି ଇଚ୍ଛା ହେଉଥିଲା ଯେ ଶୀଘ୍ର ବିଦ୍ୟାଶିକ୍ଷା ଶେଷକରି ଗଭର୍ଣ୍ଣମେଣ୍ଟ କାର୍ଯ୍ୟରେ ନିଯୁକ୍ତ ହୋଇ ଧନ ଓ ଅଧିକାରିତ୍ୱ ସମ୍ପାଦନ କରି ସ୍ୱାଧୀନ ଭାବରେ ସଂସାର ସୁଖ ଅନୁଭବ କରିବୁ । ଆଜିକାଲି ପରି ସେତେବେଳେ ମଧ୍ୟ ଇଂରାଜୀ ଶିକ୍ଷାର ପ୍ରଧାନ ଲକ୍ଷ୍ୟଥିଲା ଗଭର୍ଣ୍ଣମେଣ୍ଟ ଚାକିରୀ କିମ୍ବା ଓକିଲାତି । କିନ୍ତୁ ଆଜି ଚାକିରୀରେ ପ୍ରବେଶ କରି ତହିଁର ପରାଧୀନତାରେ ଅତ୍ୟନ୍ତ ବିରକ୍ତ ହୋଇ ପୁନରପି ଛାତ୍ର ଜୀବନକୁ ପାଇବାକୁ ପ୍ରବଳ ଇଚ୍ଛା ହେଉଅଛି । ବାସ୍ତବରେ ଛାତ୍ର ଜୀବନ ସ୍ୱର୍ଗୀୟ ଜୀବନ, ସଂସାରର କୌଣସି ଚିନ୍ତା ଜଞ୍ଜାଳ ମନରେ ପ୍ରବେଶ କରିନଥାଏ । ଲୋଭ, ମୋହ, ସ୍ୱାର୍ଥପରତା, ପରଶ୍ରୀ-କାତରତା, କାପଟ୍ୟ, କୁଟିଳତା ଇତ୍ୟାଦିର ଜାଲ ପରିବେଷ୍ଟନ କରି ନ ଥାଏ ।

"ଆଉ ଖୋଜିଲେ କାହିଁ ସେହି କଥା,
ପିଠି ହେନଇ କାହିଁ ପେଟ ବ୍ୟଥା ।"

୧୮୯୭ ଖ୍ରୀଷ୍ଟାବ୍ଦ ଜାନୁଆରୀ ମାସରେ ମାନ୍ଦ୍ରାଜରେ ବି: ଏ: ପରୀକ୍ଷାରେ ପାସ କଲି । ମାନ୍ଦ୍ରାଜଠାରୁ ଗ୍ରାମକୁ ଫେରି ଆସିଲି ।

ସେତେବେଳେ କଟକର ବାସୁଦେବ ପଟ୍ଟଯୋଶୀଙ୍କର ବସୂଚିକା ରୋଗରେ ପୁଣି ବାହୁଡ଼ା ବେଳେ ବୋଇରାଣୀଠାରେ ମୃତ୍ୟୁ ହୋଇଗଲେ । ଆମ୍ଭେମାନେ ସେ ପର୍ଯ୍ୟନ୍ତ ଅବିଭକ୍ତ ଏକ କୁଟୁମ୍ବରେ ଥିଲୁ । ଘରଚର ସ୍ୱଜନମାନଙ୍କ ମଧ୍ୟରେ ପୁରୁଷାନୁକ୍ରମେ ଏକାନ୍ନବର୍ତ୍ତୀ ପରିବାରରେ ରହିବା ପ୍ରଥା ପ୍ରଚଳିତ । ଏପରି ବହୁ କୁଟୁମ୍ବ ଏକାଠି ରହିବା ଦ୍ୱାରା ଲାଭଙ୍କ'ର ଯେତିକି ଅପକାର ସେତିକି ଘଟିଥାଏ । ଅଶିକ୍ଷିତା ସ୍ତ୍ରୀମାନଙ୍କ ମଧ୍ୟରେ ଖାଇବା, ପିଇବା, ଶୋଇବା ଇତ୍ୟାଦି ସାମାନ୍ୟ ବିଷୟ ନେଇ କଳହ ଜାତ ହୋଇଥାଏ । ପୁରୁଷମାନଙ୍କ କୌଣସି ନା କୌଣସି ପକ୍ଷ ଅବଲମ୍ବନ କରି ପରସ୍ପର ବିରୋଧୀ ହୋଇପଡ଼ନ୍ତି । ସୁତରାଂ ପାରିବାରିକ ସୁଖ ଶାନ୍ତି ନଷ୍ଟ ହୋଇଥାଏ । ବ୍ୟକ୍ତି ବିଶେଷରେ ଆତ୍ମନିର୍ଭରଶୀଳତା ନ ଥାଏ । ପୁଣି ଆଳସ୍ୟ, ପରନିର୍ଭରତା ଓ ପରମୁଖାପେକ୍ଷୀ ଭାବର ବଶୀଭୂତ ହୋଇ କୁଟୁମ୍ବସ୍ଥ ଅନେକ ଲୋକ ନିଜର ପୁରୁଷକାର ଛାଡ଼ି ଉଦାସୀନ ରହନ୍ତି । ଏହା ସତ୍ତ୍ୱେ ସମଷ୍ଟିଭୁକ୍ତ କୁଟୁମ୍ବରେ କୌଣସି ଦୁଃଖ, କ୍ଳେଶ, ଓ ବିପଦରେ ପରସ୍ପର ସହାୟ ହେବା ଯୋଗୁଁ ସେମାନଙ୍କର କଷ୍ଟ ଓ ଚିନ୍ତାରେ ହ୍ରାସ ପାଇଥାଏ । କୌଣସି ବ୍ୟକ୍ତିଙ୍କ ପରିଶ୍ରମ ଫଳରେ ଅନ୍ୟାନ୍ୟ କାର୍ଯ୍ୟ ଅକ୍ଷମ ବିକଳାଙ୍ଗ ବ୍ୟକ୍ତିମାନଙ୍କର ଜୀବନ ନିର୍ବାହ ହୋଇ ଯାଉଥାଏ । ସେ ଯାହାହେଉ ବୟଃପ୍ରାପ୍ତ ହୋଇ କାର୍ଯ୍ୟ ନିପୁଣ ହେବା ପରେ ପ୍ରତ୍ୟେକ ବ୍ୟକ୍ତି ନିଜ ନିଜ ପରିବାର ନେଇ ସୁଦୃଢ଼ ଭାବରେ ପୃଥକ ରହିବା ଶ୍ରେୟସ୍କର ।

ଆମ ଘର ତିନପୁରୁଷିଆ ଘର ବୋଲି ଉତ୍ତର ଚମ୍ପାମରେ ସୁବଖ୍ୟାତ ଥିଲା । ଆମ କୁଟୁମ୍ବରେ ବିବାଦ, ବିସମ୍ବାଦ, ମନୋ-ମାଳିନ୍ୟ ଘଟିଥିଲେ ହେଁ, ଜେଜେଇ ଥିବା ପର୍ଯ୍ୟନ୍ତ ଆମ୍ଭେମାନେ ପୃଥକ୍ ହୋଇନଥିଲୁ । ତାହାଙ୍କର ମୃତ୍ୟୁ ହୋଇଯିବା ପରେ ୧୮୯୮ ଖ୍ରୀଷ୍ଟାବ୍ଦରେ ଆମ୍ଭେମାନେ ଭିନ୍ନ ହୋଇ ପଡ଼ିଲୁ । ଧାନ୍ୟ ବିଭାଗ ପରିଶୋଧନରେ ସ୍ୱଳ୍ପମାତ୍ର ନ୍ୟୂନାଧିକ ବିଚାର ନ କରି କାର୍ଯ୍ୟନିଷ୍ପତ୍ତି କରିଦେବାକୁ ମୋର ଏକାନ୍ତ ଇଚ୍ଛା ଥାଏ । ଅମ୍ଭମାନଙ୍କର ଅପୁତ୍ରିକ ପିତୃବ୍ୟ ଖେଳ ପଣ୍ଡାଙ୍କର ଦତ୍ତକ ପୁତ୍ର ହେବାକୁ ମୁଁ ସ୍ୱୀକାର କଲି । ସୁତରାଂ ଅମ୍ଭମାନଙ୍କର ସକଳ ସମ୍ପତ୍ତି ଛଅ ଭାଗରେ ବିଭକ୍ତ ହେଲା । ବେଲଗୁଣ୍ଠା କରଣ ନାରାୟଣ ଦାସ, ସୋରଡ଼ା ଝିଲିବାଡ଼ି ନିବାସୀ ଭଞ୍ଜଣୋଇଁ ସତ୍ୟ-ବାଦୀ ଦାସ, ବୈଦ୍ୟ ଫକୀର ମହାପାତ୍ର, ବେଲଗୁଣ୍ଠା ନିବାସୀ ପୁରୋହିତ ଲକ୍ଷ୍ମୀନାରାୟଣ ରଥ—ଏମାନଙ୍କ ପଞ୍ଚାୟତରେ ବଣ୍ଟନ କାର୍ଯ୍ୟ ନିଷ୍ପନ୍ନ ହେଲା । କିନ୍ତୁ ଜଣେ ଖୁଡ଼ୁତା ପୁଅ ଭାଇ ଗଙ୍ଗାପାଣି ପଣ୍ଡା ପଞ୍ଚାୟତର ରାୟ ଅମାନ୍ୟ କରିବାରୁ ବ୍ରହ୍ମପୁର ଜଜ୍ କୋର୍ଟରେ ମକଦ୍ଦମା ହେଲା । ଏହି କଳହ ନିବାରଣ ନିମନ୍ତେ ମୁଁ ମୋର ବିଭାଗରୁ କେତେକ ସମ୍ପତ୍ତି ଅନ୍ୟ ଭାଇମାନଙ୍କୁ ଦେଇ ଦେବାରୁ ସେତେବେଳେ ବିବାଦ ତୁଟିଗଲେ । ଆମ୍ଭେମାନେ ସେ ଦିନଠାରୁ ଦୁଃଖେ ସୁଖେ ପୃଥକ୍ ପୃଥକ୍ ହୋଇ ରହିଲୁ ।

୧୮୪୮ ଖ୍ରୀଷ୍ଟାବ୍ଦରେ ଆମ୍ଭମାନଙ୍କର ବାଣ୍ଟିହେବା ସମୟରେ ମୋର ପିତାଙ୍କର ବିୟୋଗ ହୋଇଥିଲା । ଆମ୍ଭମାନଙ୍କୁ ବିଭକ୍ତ ହେବା ଦେଖିବା ବୋଧହୁଏ ତାଙ୍କର ଇଚ୍ଛା ନଥିଲା । ତାହାଙ୍କର ମନୋବାଞ୍ଛା ପୂର୍ଣ୍ଣ ହେଲା । ଆମ୍ଭେମାନେ ବାଣ୍ଟି ନ ହେଉଣୁ ସେ ୭୫ ବର୍ଷ ବୟସରେ ସ୍ୱର୍ଗ ଧାମକୁ ଚାଲିଗଲେ । ସେ ବଡ଼ ସନ୍ତୋଷୀ ଓ ଧାର୍ମିକ ଥିଲେ । ସେ ଯାହାଙ୍କୁ ଯାହା ଦିଅନ୍ତି ଅନ୍ୟ ତାହାକୁ ନ ଦେଖାଇ ଦିଅନ୍ତି । ବ୍ରାହ୍ମଣ ମାନଙ୍କୁ ହଜାର ହଜାର ଟଙ୍କା ପର୍ଯ୍ୟନ୍ତ ଦେଇ ଦେଇଥିଲେ । ଷଡ଼ଙ୍ଗୀ ପଲ୍ଲୀ ନିବାସୀ ବନମାଳୀ ରଥେ ଓ ଗୋପାଳ ରଥେ ଶିବ ଓ ବିଷ୍ଣୁ ମନ୍ଦିରରେ ନାନାବିଧ ଜପ, ତପ, କର୍ମକାଣ୍ଡ କରି ଏହାଙ୍କଠାରୁ ଅନେକ ଟଙ୍କା ନେଇଥିଲେ । ଆମ ପିତା କହନ୍ତି ।

"କର୍ମ ଆଦର ସହିବ ଦୁଃଖ
କେବେହେଁ ନୋହିବ ବିମୁଖ ।"

ସହିବା ଲୋକ ବଡ଼ଲୋକ । ଭାଇମାନଙ୍କର ଗାଳି କଳି ପ୍ରତି ଦୃଷ୍ଟିଥିବାର ଦିବାହିତା ଦୁର୍ବୃତ୍ତତା ପର୍ଯ୍ୟାର କଟୂବଚନ ସେ ଯାହା ସହିଥିଲେ ଅନ୍ୟ କେହି ଲୋକ ସେପରି ସହିବ, ଏପରି ଲୋକ ଅନ୍ୟତ୍ର ମୁଁ ଏ ପର୍ଯ୍ୟନ୍ତ ଦେଖିନାହିଁ । ସହିଷ୍ଣୁତା ଓ ଧର୍ମର ଅବତାର, ଧନ୍ୟ ସେ ମହାତ୍ମା !

ମୋର ବିମାତା (କନ୍ୟା ମା, ସାବତବୋଉ । ବାପର ଦୁଇଟି ଭାର୍ଯ୍ୟା ହେଲେ ଦ୍ୱିତୀୟ ଭାର୍ଯ୍ୟାକୁ ପ୍ରଥମ ଭାର୍ଯ୍ୟାର ସନ୍ତାନର କନ୍ୟା ମା କିମ୍ବା ସାବତ ମା ବୋଲଯାଏ ।) ଅତ୍ୟନ୍ତ ଦୁଷ୍ଟା ଓ କଳହ ପ୍ରିୟା ଥିଲେ । ମୋର ସ୍ତ୍ରୀ ମଧ ଶାନ୍ତ ପ୍ରକୃତିର ଲୋକ ନ ଥିଲେ । ସୁତରାଂ ଶାଶୂ ବୋହୂ ମଧ୍ୟରେ ସର୍ବଦା ତୁମୁଳ କଳହ ଲାଗୁଥିଲା । ଗୃହରେ ଏହି ଅଶାନ୍ତି ହେତୁ ମୁଁ ବେଶୀ କାଳ ବିଦେଶରେ ରହି ଅଧିକ ପଢ଼ାଶୁଣା କରିପାରିଲି ନାହିଁ ।

ଆମ୍ଭମାନଙ୍କ ମଧ୍ୟରେ ବାଲ୍ୟ ବିବାହ ପ୍ରଥା ପ୍ରଚଳିତ । ମୋର ପ୍ରାୟ ୧୫ବର୍ଷ ବୟସରେ ମୁଁ ତୃତୀୟ ଶ୍ରେଣୀରେ ପଢ଼ୁଥିବା ବେଳେ ଆଠଗଡ଼ ପୋଲସରା ନରହରି ଦାଶଙ୍କ ସୁନା ନାମ୍ନୀ ଏକମାତ୍ର କନ୍ୟା ସହିତ ମୋର ବିବାହ ହୋଇଥିଲା ।

ମୁଁ ପଞ୍ଚମ ଶ୍ରେଣୀରେ ପଢ଼ୁଥିବା ବେଳେ ମୋର ସ୍ତ୍ରୀ ଗୃହଯୋଗ୍ୟା (ପ୍ରଥମ ରଜସ୍ୱଳା) ହୋଇଥିଲେ । ମୋର ବନ୍ଦାପନା ବିଧାନ ସକାଶେ ଅନେକ ଲୋକ ଅନେକ ପ୍ରକାର ଅନୁରୋଧ କଲେ । ଆଶା, ପ୍ରଲୋଭନ ଦେଖାଇଲେ, ଭୀତି ପ୍ରଦର୍ଶନ ବି କଲେ, ନାନା ଭାବେ ଗାଳିଦେଲେ, ନିନ୍ଦା କଲେ, ଭଣ୍ଡା ଭଣ୍ଡି କଲେ, ଫୁସୁଲା ଫୁସିଲି କଲେ, ଅଥଚ ମୁଁ ଅବିଚଳିତ ରହିଲି । ଏହିପରି ପାଞ୍ଚ ବର୍ଷ ବିତିଗଲା । ମୁଁ ସେତେବେଳେ ପ୍ରଥମବର୍ଷ

ଏଫ୍. ଏ. କ୍ଲାସରେ ଅକୃତକାର୍ଯ୍ୟ ହେଲି ସେତେବେଳେ ସେ କହିଲେ ଯେ ସ୍ତ୍ରୀର ନିଶ୍ୱାସରେ ମୁଁ ଫେଲ ହେଲି । ରଜସ୍ୱଳା ସ୍ତ୍ରୀକୁ ଆଉ ପିତ୍ରାଳୟରେ ରଖାଯାଇ ପାରିବ ନାହିଁ । ଏହି କଥା ବୁଝି ବନ୍ଦାପନା ବିଧାନ ସକାଶେ ସ୍ୱୀକୃତ ହେଲି । ୧୮୯୪ ଖ୍ରୀଷ୍ଟାବ୍ଦରେ ମୋର ସ୍ତ୍ରୀ ପିତ୍ରାଳୟରୁ ଶ୍ୱଶୁର ଗୃହକୁ ଆସିଲେ । ଗର୍ଭାଧାନର କ୍ରିୟା ବିଧାନ ହେଲ ବାସ୍ତବରେ ଗର୍ଭାଧାନ କ୍ରିୟା ହୋଇ ପାରି ନଥିଲା । ମୋ ସ୍ତ୍ରୀ ମୋତେ ଆଉ କଣ କହିବେ ଜାଣିବା ପାଇଁ ମୁଁ ତୁନି ହୋଇ ଶୁହିଁ ରହିଲି । ମୋ ସ୍ତ୍ରୀ ମଧ୍ୟ ମୋତେ ଅପେକ୍ଷା କରି ରହିଲେ । ଉଭୟେ ଏହିପରି ପରସ୍ପରକୁ ଅପେକ୍ଷା କରି ରହିଲୁ, ରାତି ପାହିଗଲା ।

ଶାଶୁ ବୋହୂଙ୍କର ମନରେ ମେଳ ହେଲା ନାହିଁ । ସର୍ବଦା ସ୍ତ୍ରୀଙ୍କର ଅଭାବ ଅଭିଯୋଗ ଶୁଣି ମୋତେ ବ୍ୟସ୍ତ ହେବାକୁ ପଡ଼େ । ଏଣେ ପିତା ମହୋଦୟ ବୃଦ୍ଧ, ପୀଡ଼ିତ ଏବଂ ଅସହାୟ । ଏହିପରି ନାନା କାରଣରୁ ବି. ଏ. ପାଶ୍ ପରେ ମୁଁ ମୋର ଅଧ୍ୟୟନ ଶେଷ କରି ଗ୍ରାମକୁ ବାହାରି ଆସିଲି ।

୧୮୯୭ ଜାନୁଆରୀରେ ବି: ଏ: ପାଶ୍ କରିବାର ପୂର୍ବ ଏକବର୍ଷ କାଳ ଗ୍ରାମରେ ବସିଲି । ଆମ୍ଭେମାନେ ବାଣ୍ଟି ହେଲାରୁ ମୁଁ ଆମ ଭାଇମାନଙ୍କ ପାଖେ ନ ରହି ଆମ ଗ୍ରାମର ଅନ୍ୟ ଜାଗାରେ ୨ଟା ଡିହ ଆଉ ଦୁଇଟା ଛଣାଘର କିଣି ସେହି ଜାଗାରେ ପ୍ରାୟ ୫

ହଜାର ଟଙ୍କା ଖର୍ଚ୍ଚକରି ଗୋଟିଏ ପକ୍କା ଗୃହ ନିର୍ମାଣ କରାଇଲି । ଆମ ଦେଶର ଲୋକେ ଘରେ ବଡ଼ ବଡ଼ ଝିଡ଼କି ରଖନ୍ତି ନାହିଁ । ଘର ହାଲୁକା ହୋଇଯିବ, ବାହାର ଲୋକେ ଭିତର ଦେଖିନେବେ, କାଳେ ଚୋର ପଶିପିବେ ଏହି ଖିଆଲରେ ଲୋକେ ବହୁ ସଂଖ୍ୟକ ବା ବଡ଼ ବଡ଼ ଝରକା ରଖନ୍ତି ନାହିଁ, ବାୟୁ ଓ ଆଲୋକରୁ ବଞ୍ଚିତ ହୁଅନ୍ତି । ଏହି ପ୍ରଚଳିତ ପ୍ରଥା ବିରୋଧରେ ମୁଁ ଅନେକ ବଡ଼ ବଡ଼ ଝିଡ଼କି ରଖାଇଲି । ଆମ ଘରଟାକୁ ଲୋକେ କଟସାଘର ବା ବଙ୍ଗଳା ଘର କହନ୍ତି । ଏହି ଗୃହ ନିର୍ମାଣ ପରେ ମୁଁ ଗୃହକର୍ମ ଅନୁସରଣରେ ବାହାରିଲି ।

ଏହି ସମୟରେ ଆମ ଗ୍ରାମ ରୟତମାନେ ଗଭର୍ଣ୍ଣମେଣ୍ଟ ଜଳ ପ୍ରକାଶେ ଖଣ୍ଡେ ଦରଖାସ୍ତ ଲେଖିଦେବା ନିମନ୍ତେ ମୋତେ ଅନୁରୋଧ କରିଥିଲେ । ମୁଁ ଦରଖାସ୍ତଟି ଇଂରାଜୀ ଭାଷାରେ ଲେଖି ଦେଇଥିଲି । ସେମାନେ ଉକ୍ତ ଦରଖାସ୍ତ ନେଇ ଜମାବନ୍ଦୀ ସମୟରେ ଜିଲ୍ଲା କଲେକ୍ଟର ୱଟେଇଲର ସାହେବଙ୍କ ଠାରେ ଦାଖଲ କରିଥିଲେ । ମୁଁ ଉକ୍ତ ଦରଖାସ୍ତରେ ପ୍ରସଙ୍ଗ କ୍ରମେ ଏହି ମର୍ମରେ ଲେଖିଥିଲି- ନିମ୍ନ ସ୍ତରର ରେଭିନ୍ୟୁ କର୍ମଚାରୀମାନେ ରୟତଙ୍କ ପ୍ରକାଶେ ଜଳ ଯୋଗାଇ ଦେବାକୁ ନାହାନ୍ତି କିନ୍ତୁ ନିଷ୍ଠୁର ଭାବରେ କର ଆଦାୟ କରିଦେବାକୁ ଅଗ୍ରସର । ମୁସଲମାନ ରାଜତ୍ୱରେ ଯେଉଁ ଅନ୍ୟାୟ ଅବାଧରେ ଚାଲି ଯାଉଥିଲା ତାହା ଏବେ ଇଂରେଜ ଶାସନରେ ଶୋଭନୀୟ ନୁହେଁ । କଲେକ୍ଟର ସାହେବ ଉକ୍ତ ଦରଖାସ୍ତ ନିଜେ ପଢି ତହିଁର ଭାଷା ଅତ୍ୟନ୍ତ କର୍କଶ ଓ ଅନୁପଯୁକ୍ତ ବୋଲି ମନ୍ତବ୍ୟ

ପ୍ରକାଶ କରି ମୋର ନାମଟା ଟଗୃର ତାଙ୍କର ନୋଟ ବହିରେ ଲେଖି ରଖିଥିଲେ । ମୁଁ ଯେଉଁବେଳେ କାର୍ଯ୍ୟ ପ୍ରାର୍ଥୀ ହୋଇ ତାଙ୍କ ନିକଟକୁ ଗଲି ସେ ମୋତେ ଉକ୍ତ ଦରଖାସ୍ତ ଲେଖା ସମ୍ବନ୍ଧରେ ନାନାବିଧ ପ୍ରଶ୍ନ କରିଥିଲେ । ମୁଁ ଯେତେପର୍ଯ୍ୟନ୍ତ ଜାଣେ ତହିଁର ଯଥାର୍ଥ ଉତ୍ତର ଦେଇଥିଲି । ତାପରେ କଲେକ୍ଟର ସାହେବ ଦୟାକରି ମୋତେ ମାସିକ ୬୦ ଟଙ୍କାର ଏକ ଗୁମାସ୍ତା କାର୍ଯ୍ୟରେ ନିଯୁକ୍ତ କଲେ । ଛତ୍ରପୁର ଠାରେ ମୋର ରହିବା ହେଲା । ଏହି କାର୍ଯ୍ୟରେ ପ୍ରାୟ ୬ ମାସ ଥିଲି । ଗୁମାସ୍ତା କାର୍ଯ୍ୟରେ ନିମ୍ନମାତ୍ର-ହେମ କାର୍ଯ୍ୟ କରିବାକୁ ପଡୁଥାଏ । ବ୍ୟକ୍ତିଗତ ସ୍ୱାଧୀନତା ପ୍ରତି ଅଯଥା ଆକ୍ରମଣ ସହ୍ୟ କରି ନପାରି ଉକ୍ତ କାର୍ଯ୍ୟ ପରିତ୍ୟାଗ କରି ନିଜ ଗ୍ରାମକୁ ଚାଲିଗଲି । ଆଉ ଚାକିରି କରିବା ଇଚ୍ଛା ହେଲାନାହିଁ ।

ନିଜର ଗୃହ ସଂସାରର କାର୍ଯ୍ୟ ନିର୍ବାହକରି, ପ୍ରାୟ ଦୁଇବର୍ଷ କାଳ ନିଜ ଗ୍ରାମରେ ଅବସ୍ଥାନ କଲି । ମୁଁ ବି: ଏ: ଶ୍ରେଣୀ ପଢ଼ୁ ଥିଲାବେଳେ କୌଣସି ବିଜ୍ଞାପନ ଦେଖି ସବ୍‌ରେଜିଷ୍ଟ୍ରାର କାର୍ଯ୍ୟ ସକାଶେ ଖଣ୍ଡିଏ ଦରଖାସ୍ତ ଫିଙ୍ଗି ଦେଇଥିଲି, ଚାକିରିର କୌଣସି ସମ୍ଭାବନା ନ ଥିଲା । ବର୍ତ୍ତମାନ ଛତ୍ରପୁର ରେଜେଷ୍ଟ୍ରି ଅଫିସରେ କାର୍ଯ୍ୟ ଖାଲି ହେବେ ପ୍ରୋବେଶନର ସବ୍‌ରେଜିଷ୍ଟ୍ରାର କାର୍ଯ୍ୟ ମୋତେ ଯାଚି ଦେବାରୁ ମୋର ବନ୍ଧୁମାନଙ୍କ ଅନୁରୋଧ ଭାଙ୍ଗି ନ ପାରି ୧୯୦୦ ଖ୍ରୀଷ୍ଟାବ୍ଦରେ ଉକ୍ତ ସବରେଜିଷ୍ଟ୍ରାର କାର୍ଯ୍ୟରେ ନିଯୁକ୍ତ ହେଲି । ଛତ୍ରପୁର ଠାରେ ପ୍ରାୟ ୩ ବର୍ଷ ମୋତେ ଏହି କାର୍ଯ୍ୟରେ

ନିର୍ବାକୁ ହେଲା । ଏହି ତିନିବର୍ଷ ମଧ୍ୟରେ ସବ୍‌ରେଜିଷ୍ଟ୍ରାରମାନେ ଛୁଟି ନେଇ ଗଲାବେଳେ ସେମାନଙ୍କ ସ୍ଥାନରେ ଅସ୍ଥାୟୀ ଭାବରେ ସୋମପେଣ୍ଠ, ଆଗିକା, ବ୍ରହ୍ମପୁର ଓ ରମ୍ଭାକୁଣ୍ଡା ସବ୍‌ରେଜିଷ୍ଟ୍ରି ଅଫିସରେ କାର୍ଯ୍ୟ କରିଥିଲି ।

ମୁଁ ଶୁଣୁଥାଏ ଯେ ପ୍ରତ୍ୟେକ ଗଭର୍ଣ୍ଣମେଣ୍ଟ କର୍ମଚାରୀ ଉତ୍କୋଚ ଗ୍ରହଣ କରିଥାଆନ୍ତି । ଲାଞ୍ଚର ପ୍ରଲୋଭନରୁ ବଞ୍ଚିବା ବଡ଼ କଠୋର ବ୍ୟାପାର । କୌଣସି ପ୍ରକାର ଲାଞ୍ଚ ଗ୍ରହଣ ନକରି ଗଭର୍ଣ୍ଣମେଣ୍ଟ କାର୍ଯ୍ୟ ସୁଚାରୁ ରୂପେ ନିର୍ବାହ କରିପାରିବା ଶକ୍ତିର ଆଦର୍ଶ ମୋ ଜୀବନରେ ଦେଖାଇବା ନିମନ୍ତେ ମୁଁ ଦୃଢ଼ ସଙ୍କଳ୍ପ କରି ସରକାରୀ କାର୍ଯ୍ୟରେ ପ୍ରବେଶ କଲି । ମୁଁ ସୋମପେଣ୍ଠ ଠାରେ ସବ୍‌ରେଜିଷ୍ଟ୍ରାର ଥିଲାବେଳେ ଏକଦିନ ଏକ ମୃତ୍ୟୁ ଷ୍ଟାମ୍ପ ପତ୍ରରେ ରେଜେଷ୍ଟ୍ରି କରିବାକୁ ପଡ଼ିଥିଲା । ଏହି ଉଇଲନାମା ରେଜେଷ୍ଟ୍ରି ରହିତ ହୋଇଥିଲେ କୌଣସି ବ୍ୟକ୍ତି ୧୫୦୦୦ ଟଙ୍କା ସମ୍ପତ୍ତିର ଅଧିକାରୀ ହୋଇଥାଆନ୍ତା । ଅନେକ ଗୁଡ଼ିଏ ସମ୍ଭବପର କାରଣ ଦେଖାଇ ଉକ୍ତ ଉଇଲନାମାର ରେଜେଷ୍ଟ୍ରି ନିରାକରଣ କରିଦେବାର ସୁବିଧା ଥିଲା । ସେହି ବ୍ୟକ୍ତି ୧୦୦୦ ଟଙ୍କା ଲାଞ୍ଚର ପ୍ରଲୋଭନ ଦେଖାଉଥିଲା । କିନ୍ତୁ ମୁଁ ଏହି ପ୍ରଲୋଭନ ଅତିକ୍ରମ କରି ଯଥାର୍ଥ କଥା ଲେଖି ଉକ୍ତ ଉଇଲନାମା ରେଜେଷ୍ଟ୍ରି କରି ଦେଇଥିଲି ।

ପ୍ରତ୍ୟେକ କ୍ରିୟା ଓ ବସ୍ତୁର ଉଜ୍ଜ୍ୱଳ ଏବଂ ଅନ୍ଧକାର ଦୁଇ ଦୁଇ ପାର୍ଶ୍ୱ ଥାଏ । ମାନବ ଚରିତ୍ର ଏହିପରି ଦୁଇ ଭାଗରେ ବିଭକ୍ତ ।

ମୁଁ ହୋମପେଣ୍ଟ ଠାରେ ଅସ୍ଥାୟୀ ସବ୍‌ରେଜିଷ୍ଟ୍ରାର ଥିବାବେଳେ କୌଣସି ଏକ ବେଶ୍ୟାର କୁହୁକରେ କେତେକାଳ ପଡ଼ିଯାଇଥିଲି । ଏହାହିଁ ମୋର ଦ୍ୱିତୀୟବାର ସ୍ଖଳନ । ସେତେବେଳେ ମୋର ସ୍ତ୍ରୀ ପାଖରେ ଥିଲେ ବୋଧହୁଏ ଏ ବ୍ୟଭିଚାର ଘଟି ନଥାନ୍ତା ।

୧୯୦୪ ରେ ମୁଁ ସବ୍-ରେଜିଷ୍ଟ୍ରାର ରୂପେ ନିଯୁକ୍ତ ହୋଇ ଭିଶାଖାପାଟଣା ଜିଲ୍ଲା ପାର୍ବତୀପୁରକୁ ସ୍ଥାନାନ୍ତରିତ ହେଲି । ଏହା ଏକ ତେଲୁଗୁ ପ୍ରଧାନ ସ୍ଥାନ ଥିଲା । ଏଠାରେ କଣ୍ଡିପସ୍ତ ଝଞ୍ଜୁରୁ ଏବଂ ହଳୁଆ ଶ୍ରେଣୀର ବ୍ରାହ୍ମଣ ବାସକରନ୍ତି । ଏହି ଅପରିଚିତ ସ୍ଥାନଟି ପ୍ରଥମେ କେତେ ମାସ ସୁଖକର ବୋଧ ହେଲାନାହିଁ । ଅଭ୍ୟାସ ଯୋଗୁଁ ସବୁ ଅବସ୍ଥା କ୍ରମଶଃ ସହ୍ୟ କରିବାକୁ ହୁଏ । ଏଠାରେ ଶ୍ରୀଯୁକ୍ତ କୃଷ୍ଣ ଚରଣ ପାଢ଼ୀ ପୋଲିସ ସ୍କୁଲ ଶିକ୍ଷକ ଥିଲେ । ଏହାଙ୍କ ସହିତ ମୋର ଘନିଷ୍ଠ ବନ୍ଧୁତା ଥିଲା । ଏହାଙ୍କ ସଙ୍ଗରେ ଅହର୍ନିଶ ସଙ୍ଗ ଆଳାପ ହେତୁ ଅନ୍ୟ ଅଭାବ ସବୁ ପାସୋରି ଯାଇ ପାର୍ବତୀପୁର ସ୍ୱର୍ଗ ସମ୍ପଦ ପରି ବୋଧହେଲା । ସମ୍ପଦରେ ବିପଦରେ କାୟ-ମନୋବାକ୍ୟରେ ଦୁଇ ବ୍ୟକ୍ତିଙ୍କର ପରସ୍ପର ମିଳନ — ଅନ୍ତରର ମିଳନ, ଆତ୍ମାର ଏକଭାବ ଅନୁଭବ କରିବା ହିଁ ମର୍ତ୍ତ୍ୟରେ ସ୍ୱର୍ଗ ସମ୍ପଦ ।

"ଆତ୍ମାକୁ ଆତ୍ମା ଯଦ୍ଧ ସ୍ପୃରେ
ପରମାନନ୍ଦେ ସେ ବିହରେ ।"

ଆମ୍ଭ ଦୁହିଙ୍କର ପୁଣ୍ୟ କାର୍ଯ୍ୟରେ ବା ପାପ କର୍ମରେ ପରସ୍ପର ପ୍ରତି ସହୃଦୟତା, ସହଯୋଗିତା ଓ ସହାନୁଭୂତି ଥାଏ । ଏହି ସ୍ଥାନରେ ମୁନସଫ୍, ମାଜିଷ୍ଟ୍ରେଟ, ଅନେକ ଓକିଲ ପ୍ରଭୃତି ଭଦ୍ରଲୋକଙ୍କ ସହାଳାପରେ ସୁଖରେ ଦିନ କଟିଯାଏ । ନିକଟସ୍ଥ ସଙ୍ଗ ବଲସା ଜମିଦାରଙ୍କ ସହିତ ମୋର ସ୍ନେହ ସମ୍ବନ୍ଧ ଦିନୁଦିନ ବଢ଼ିଲା । ଏହି ଜମିଦାରୀର ରାଜା ମୃତ୍ୟୁଞ୍ଜୟ ନିଃଶଙ୍କ ବାହାଦୁର ବୃଦ୍ଧ ହୋଇ ଯାଇଥିଲେ । ଏହାଙ୍କର ନାତି ଶ୍ରୀ ବଟେଶ୍ବର ନିଃଶଙ୍କ ବାହାଦୁର ରାଜତ୍ୱ ପାଇବା କଥା ଥିଲା । ରାଜା ମୃତ୍ୟୁଞ୍ଜୟ ନିଃଶଙ୍କ ତେଲୁଗୁ କର୍ମଚାରୀମାନଙ୍କ ଦ୍ୱାରା ପରିବେଷ୍ଟିତ ହୋଇ ଜଣେ ବେଶ୍ୟାର ବଶୀଭୂତ ହୋଇ ପଡ଼ିଥିଲେ । ବୃଦ୍ଧ ରାଜାଙ୍କର ମତିର ଅସ୍ଥିରତା ଦେଖି ମୁଁ ତାହାଙ୍କର ବନ୍ଧୁ ଦସ୍ତାବଜ ରେଜେଷ୍ଟ୍ରି ନିରାକରଣ କରି ଦେଇଥିଲି । ଏତଦ୍ୱାରା ଯୁବରାଜ ବଶ୍ୱମ୍ଭରଙ୍କର ଅନେକ ଉପକାର ହୋଇଥିଲା । ରାଜ୍ୟଟା ଆଉ କ୍ଷତିଗ୍ରସ୍ତ ନ ହୋଇ ଯୁବରାଜଙ୍କର ହସ୍ତଗତ ହୋଇଥିଲା । ଏହି ରେଜେଷ୍ଟ୍ରି ନାମଞ୍ଜୁର ଫଳରେ ବଲସା ମହାରାଜାଙ୍କର କିଛି କ୍ଷତି ହେଲା; ଅର୍ଥାତ୍ ଅଯଥା ଲାଭ ହୋଇ ପାରିଲା ନାହିଁ । ତେଣୁ ତାହାଙ୍କର ନିଗ୍ରହର ପାତ୍ର ହେଲି । ଏଥିପାଇଁ ଲୋକେ ମୋତେ ନାନା ପ୍ରକାର ଭୟ ଦେଖାଇ ଥିଲେ । ପୁଣି କେହି ମଧ୍ୟ ମୋର ଅପବାଦ ରଟନା କରିବାକୁ ଲାଗିଲେ । ରେଜେଷ୍ଟ୍ରି ନାମଞ୍ଜୁର ହେବା କିଛିଦିନ ପରେ ବୃଦ୍ଧରାଜାଙ୍କର କାଳ ହୋଇଗଲେ । କାଳେ ମୁଁ ଅହେତୁ

ଲୋଭ ଆଶାରେ ପକ୍ଷପାତ ବା ଅନ୍ୟାୟ କରିଥିବ ଭାବି ସ୍ଥାନୀୟ ସବ୍ କଲେକ୍‌ଟର (ସେତେବେଳେ ଦତ୍ତ ସାହେବ ବୋଲି ଜଣେ କଲେକ୍‌ଟର ଥିଲେ) ଅକସ୍ମାତ୍ ସବ୍‌ରେଜିଷ୍ଟ୍ରି ଅଫିସକୁ ଆସି ରହସ୍ୟଭାବରେ ମୋ ସମ୍ବନ୍ଧ ଆଲୋଚନା କରି ସତ୍ୟ କଥା ଜାଣି ପ୍ରୀତ ହୋଇଥିଲେ । ଯୁବରାଜ ବିଶ୍ୱେଶ୍ୱର ସିଂହଙ୍କ ରେଜିଷ୍ଟ୍ରି ନାମଞ୍ଜୁର ପରେ ମୋର କାର୍ଯ୍ୟରେ ଅତ୍ୟନ୍ତ ପ୍ରୀତ ହୋଇ "ଆଜୀବନ ଋଣୀ ହୋଇ ରହିଲି, ଉପକାର ଶୁଝିପାରିବି ନାହିଁ" ବୋଲି କହୁଥାନ୍ତି । କିନ୍ତୁ ମୋତେ ସେ କେବେ କିଛି ଦେଇ ନାହାନ୍ତି । ସେ ମଧ୍ୟ ବହୁକାଳ ବଞ୍ଚିଲେ ନାହିଁ । ତାହାଙ୍କରି ଜମିଦାରି ନିଲାମ ହୋଇ ଋଣ ପରିଶୋଧ କରିବାକୁ ହେଲା । ଶଙ୍କର ସିଂହଙ୍କ ବାହାଦୁର ନାମରେ ଏହାଙ୍କର ଜଣେ ପିତୃବ୍ୟ ଥିଲେ । ସେ ମୋର ଖୁବ୍ ଆତ୍ମୀୟ ସଙ୍ଗୀ ଥିଲେ । ଅତିରିକ୍ତ ବ୍ୟୟ ଓ ନିଶା ସେବନରେ ଏହି ରାଜପରିବାର ଅସ୍ତ ହେବାକୁ ବସିଅଛି ।

ପାଟଣାଗଡ଼ ଠାରେ ମୋତେ ୨ ବର୍ଷ ରହିବାକୁ ପଡ଼ିଲା । ଏହି ସମୟରେ ଆଉ ଏକ ବିଶେଷ ଘଟଣା ଏହି ଯେ ଏଠାରେ ମୁଁ ଏକ ଉତ୍କଳ ବ୍ରାହ୍ମଣ ବାଳ ବିଧବାର ପୁନର୍ବିବାହ କରାଇ ଦେଇଥିଲି । ପଣ୍ଡିଆ ଗ୍ରାମ ନିବାସୀ ଆର୍ତ୍ତତ୍ରାଣ ମହାପାତ୍ରଙ୍କ ସୁରଙ୍ଗୀଗଡ଼ ନିବାସୀ କେହି ବ୍ରାହ୍ମଣର ବୈଦେହୀ ନାମ୍ନୀ ଝିଅଙ୍କ

ହସ୍ତିତ ବିବାହ ହୋଇଥିଲା । ଏହି ଦମ୍ପତିଙ୍କୁ ୫୫୦୦ ଙ୍କାରେ ଜମିଣ୍ଡ ଭୂମି ଖରିଦ କରି ଦେବାକୁ ହେଲା । ଏହି ଭୂମିର ଖରିଦ, ବିବାହ ଖର୍ଚ୍ଚ, ଏ ଦମ୍ପତିର ପରିପୋଷଣ ଇତ୍ୟାଦିରେ ମୋର ପ୍ରାୟ ଏକ ହଜାର ଟଙ୍କା ଖର୍ଚ୍ଚ ହୋଇଥିଲା । ଖଲିକୋଟ-ଆଠଗଡ଼ ରାଜା ଶ୍ରୀହରିହର ମର୍ଦ୍ଦରାଜ ଦେବ, ସମ୍ପାଦକ ମାଳମଣି ବିଦ୍ୟାରତ୍ନ, ପଣ୍ଡିତ ଗଙ୍ଗାଧର ବିଦ୍ୟାଭୂଷଣ, ଏମାନଙ୍କର କେବଳ ମୌଖିକ ସହାନୁଭୂତି ପୂର୍ବରୁ ଥିଲା । କିନ୍ତୁ କାର୍ଯ୍ୟ ବେଳକୁ କେହି ହେଲେ ଦେଖାଦେଲେ ନାହିଁ, ଅର୍ଥ ସାହାଯ୍ୟ ତେଣେ ଥାଉ ।

ଚାର୍ଟପୁର ନିବାସୀ ଓଡ଼ିଆ ବ୍ରାହ୍ମଣମାନେ ଏଥିରେ ଉତ୍ତେଜିତ ହେଲେ, ବହୁ ବିଘ୍ନ ଘଟାଇଲେ, ଢେଙ୍କା ପଥର ଫିଙ୍ଗିଲେ । ତତ୍କାଳୀନ ସ୍ଥାନୀୟ ଡେପୁଟି କଲେକ୍ଟର ଦତ୍ତ ସାହେବ ପୋଲିସ ସାହାଯ୍ୟ ଦେଇଥିବାରୁ ସକଳ କାର୍ଯ୍ୟ ସୁସମ୍ପାଦିତ ହୋଇଥିଲା । ମଞ୍ଜୁଷା ରାଜଗୁରୁ ରାଜଗୋପାଳସ୍ୱାମୀ, ପୋଲିସ୍ ଅଫିସର କୃଷ୍ଣଚରଣ ପାଢ଼ୀ କେବଳ ଏହି ବିବାହ କାଳରେ ସାହାଯ୍ୟ କରିଥିଲେ । କୃଷ୍ଣ ଚରଣ ବାବୁ ମଧ୍ୟ ଏହି ବିବାହ ଭୋଜରେ ଯୋଗ ଦେବାକୁ ଡରିଲେ ।

ସେତେବେଳେ ମୋ ପାଖରେ ପୂଜାରୀ ନଥିଲେ । ପୁନର୍ବିବାହିତା ବିଧବା ସ୍ତ୍ରୀ ଓ ତାହାର ସ୍ୱାମୀ କନ୍ଥଣ ସକାଳେ

ମୋ ବସାରେ ଥିଲେ । ସେମାନଙ୍କ ହାତରୁ ମୁଁ ଖାଇଥିବା ଯୋଗୁଁ ମୋର ଜାତିଭ୍ରଷ୍ଟ ହୋଇଥିଲି ବୋଲି କୃଷ୍ଣଚରଣ ବାବୁ ମଧ୍ୟ ପ୍ରକାଶ୍ୟ ଭାବରେ ମୋତେ ଡାକିନେଇ ତାହାଙ୍କ ଘରେ ଖାଇବାକୁ ଦେଇପାରି ନ ଥିଲେ । ମୋତେ ଦୁଇଦିନ କାଳ ଫଳାହାର ଉପବାସ କରିବାକୁ ପଡ଼ିଥିଲା । ପାଙ୍କଶାପୁର ବାସିନ୍ଦା ଓଜଲ ନାରାୟଣ ପାଣିଗ୍ରାହୀ ପ୍ରମୁଖ ଓଡ଼ିଆ ବ୍ରାହ୍ମଣମାନେ ଓ କୃଷ୍ଣବାବୁ ମୋ ପ୍ରତି ଖଡ୍ଗହସ୍ତ ହେଲେ । ଶୁଣାଗଲା ଯେ ସେମାନେ ବାଟଜଗି ଆମ୍ଭ ଦୁହିଁଙ୍କୁ ହାଣି ପକାଇବେ । କିନ୍ତୁ ସବୁବେଳେ ଧର୍ମର ଜୟ ହୋଇଥାଏ । ତେଣୁ କେହି କିଛି କରିପାରି ନ ଥିଲେ । ପାଙ୍କଶାପୁରଠାରେ ବହୁକାଳ ମୁଁ ଏକା ଥିଲି । ଏଡ଼େ ଦୂର ପ୍ରଦେଶକୁ ମୋ ସ୍ତ୍ରୀ ମୋ ପାଖକୁ ଯାଇ ପାରି ନଥିଲେ । ସେତେବେଳେ ମୋର କୌଣସି କର୍ମଚାରୀଗଣ ବନ୍ଧୁଙ୍କ ପ୍ରବର୍ତ୍ତ-ନାରେ ପଡ଼ି କୌଣସି ବେଶ୍ୟା ସମ୍ପର୍କରେ ମୋର ଚରିତ୍ରର ସ୍ଖଳନ ଘଟିଥିଲା ।

୧୯୦୧ ସାଲରେ ମୁଁ ବ୍ରହ୍ମପୁର ସବ୍ ରେଜଷ୍ଟ୍ରାର ଥିବା ବେଳେ ରମ୍ଭାଠାରେ ମୋର ମାଳମଣି ବନ୍ଦ୍ୟାରନ୍ଙ୍କ ସହିତ ପ୍ରଥମ ସାକ୍ଷାତ ହେଲା । ତାହାଙ୍କ ସହିତ ମୋର ଦିନକୁ ଦିନ ଘନିଷ୍ଠ ସ୍ନେହ ସମ୍ବନ୍ଧ ବଢ଼ିବାକୁ ଲାଗିଲା । ସେହି ସମୟରେ ଉକ୍ତ ମାଳମଣି ବାବୁ, ଶ୍ରୀଯୁକ୍ତ ବଳଭଦ୍ର ମହାପାତ୍ର, ଖଲିକୋଟ

ଚାଲୁକା ସିରସ୍ତାଦାର ଓ ମୁଁ ଆମ୍ଭେ ତିନିଜଣ ଏକତ୍ର ବସିକରି ବ୍ରହ୍ମପୁରଠାରେ ଏକ ସମ୍ମିଳନୀର ପ୍ରସ୍ତାବ କଲୁ । ପ୍ରସ୍ତାବ ଅଟେ ଖଲ୍ଲିକୋଟ ଆଠଗଡ଼ ରାଜା ଶ୍ରୀ ହରିହର ମର୍ଦ୍ଦରାଜ ଦେବଙ୍କ ସାହାଯ୍ୟରେ କାର୍ଯ୍ୟ ଆରମ୍ଭ ହେଲା । ଅନ୍ୟାନ୍ୟ ଉତ୍କଳ ପ୍ରଦେଶୀୟ ବାବୁମାନେ ନିମନ୍ତ୍ରିତ ହେଲେ । କଟକଠାରୁ ମଧୁବାବୁ ମଧ୍ଯ ଆସି ଏହାକୁ ଅଳଂକୃତ କଲେ । ଏହି ଅଧିବେଶନ ଦିନଠାରୁ ଓଡ଼ିଆ ମାନଙ୍କର ଜାତୀୟ ଜାଗରଣ ଏବଂ ବିଚ୍ଛିନ୍ନ ଉତ୍କଳର ଏକୀକରଣ ଶକ୍ତି ଆରମ୍ଭ ହେଲା । ଏହି ଅଧିବେଶନ ହିଁ 'ଉତ୍କଳ ସମ୍ମିଳନୀ'ର ଶିଳାପତ୍ତନ କହିଲେ ଅତ୍ୟୁକ୍ତି ହେବ ନାହିଁ ।

୧୯୦୨ ଖ୍ରୀଷ୍ଟାବ୍ଦରେ ମୁଁ ରସୁଲକୁଣ୍ଡା ସବ୍ ରେଜିଷ୍ଟ୍ରାର ଥିଲାବେଳେ ସାନଖେମୁଣ୍ଡି ର ପୋଡ଼ାମାଳ ଗଡ଼ ନିବାସୀ ଶ୍ରୀଯୁକ୍ତ ଗୋପୀନାଥ ରାଜଗୁରୁ ମୋ ସହିତ ସର୍ବଦା ଉତ୍କଳ ଦେଶ ମିଶ୍ରଣର ପ୍ରସ୍ତାବ କରୁଥିଲେ । ସେହିଦିନଠାରୁ ବିଚ୍ଛିନ୍ନ ଉତ୍କଳର ସମ୍ମିଶ୍ରଣ ଚିନ୍ତା ମୋ ମନରେ ଦୃଢ଼ୀଭୂତ ହେବାକୁ ଲାଗିଲା । ମୁଁ ଏକଦିନ ବସି ଏକ ସୁଦୀର୍ଘ ଆବେଦନ ପତ୍ର ଲେଖିଲି । ମୋର ଅନେକ ବନ୍ଧୁଙ୍କ ସହିତ ଉତ୍କଳ ଦେଶ ମିଶ୍ରଣ ବିଷୟରେ ଆଲୋଚନା କଲି । କେହି କେହି ଅସାଧ୍ଯ ବୋଲି କହିଲେ ପୁଣି କେହି କେହି ହୃଦୟତାର ସହିତ ଯୋଗ ଦେଇଥିଲେ । ଉକ୍ତ ଆବେଦନ ପତ୍ରଟି କଟକ ପଠାଗଲା । ସେଠାରେ ସୁଶିକ୍ଷିତ ବାବୁମାନଙ୍କ ଦ୍ୱାରା ସଂଶୋଧିତ ହୋଇ ଛପାଗଲା । ଭିନ୍ନ ଭିନ୍ନ ସ୍ଥାନର ବନ୍ଧୁମାନଙ୍କ ନିକଟକୁ ତାହା ପଠାଯାଇ ଦସ୍ତଖତରେ

ଓଡ଼ିଆ ମାନଙ୍କର ସ୍ୱାକ୍ଷର ସଂଗୃହୀତ ହେଲା । ଏହି ସମୟରେ ବାଲେଶ୍ୱର ରାଜା ବୈକୁଣ୍ଠନାଥ ଦେଙ୍କ ଯତ୍ନରେ ଏହି ଦେଶ ମିଶ୍ରଣ ବିଷୟ ଘେନି ସେହି ଅଞ୍ଚଳରୁ ଭାରତ ଗଭର୍ଣ୍ଣମେଣ୍ଟ ନିକଟକୁ ଏକ ଆବେଦନ ପତ୍ର ପ୍ରେରିତ ହୋଇଥିଲା । ଗଭର୍ଣ୍ଣର ଜେନେରାଲ ଲର୍ଡ କର୍ଜ୍ଜନ ମହୋଦୟ ଆମ୍ଭମାନଙ୍କର ନିବେଦନ ଗ୍ରହଣ କରି ସମଗ୍ର ଉତ୍କଳବାସୀ ପ୍ରଦେଶ ଗଞ୍ଜାମ, ଓଡ଼ିଶା, କୌଣସି ପ୍ରାଦେଶିକ ଶାସନାଧୀନରେ ରଖାଯାଇପାରେ କି ନା ଏ ବିଷୟରେ ପ୍ରାଦେଶିକ ଗଭର୍ଣ୍ଣମେଣ୍ଟଙ୍କ ମତ ଜିଜ୍ଞାସା କଲେ । ଗଞ୍ଜାମର ନିଷ୍ପିଡ଼ ଓଡ଼ିଆମାନେ କେତେ ଜଣାଶୁଣା କଲେହେଁ ଗଞ୍ଜାମ ତେଲୁଗୁ ଭାଇମାନଙ୍କ କୁମନ୍ତ୍ରଣା ଓ କୂଟ କଳ୍ପନା ଯୋଗୁଁ ମାନ୍ଦ୍ରାଜ ଗଭର୍ଣ୍ଣମେଣ୍ଟ ଓଡ଼ିଆମାନଙ୍କର ରାଜନୈତିକ ଓ ସାମାଜିକ ଦୁଃଖକ୍ଲେଶ, ଅଭାବ ଅସୁବିଧା ହୃଦୟଙ୍ଗମ କରି ନ ପାରିବା କାରଣରୁ ଉତ୍କଳ ସମ୍ମିଶ୍ରଣ ପ୍ରସ୍ତାବ କାର୍ଯ୍ୟରେ ପରିଣତ ହେଲା ନାହିଁ ।

୧୯୦୪ ସାଲରେ ମୁଁ ସୋମପେଣ୍ଠାରେ ଥିଲାବେଳେ ଦେଶହିତୈଷୀ ମହାତ୍ମା ନରସିଂହ ଦାସ (ସେତେବେଳେ ପୁରୁଷୋତ୍ତମପୁର ସବରେଜିଷ୍ଟ୍ରାର ଥିଲେ ।) ଓ ମୁଁ, ଆମ୍ଭେ ଦୁହେଁ ଦେଶମିଶ୍ରଣ ଆନ୍ଦୋଳନରେ ହସ୍ତକ୍ଷେପ କରିଅଛୁ ବୋଲି ଆଶଙ୍କା କରି ମତେ ତେଲଗୁ ପ୍ରଦେଶ ବିଶାଖାପାଟଣା ଜିଲ୍ଲା ଅନ୍ତର୍ଗତ ଉକ୍ତ ପାର୍ବତୀପୁରକୁ ନେଇଯାଇଥିଲେ । ଶରୀର ହିଁ ନା ଆବଦ୍ଧ ବା ଇତସ୍ତତଃ କରାଯାଇପାରେ, କିନ୍ତୁ ମନ ସର୍ବଦା ସ୍ୱାଧୀନ ।

ସବୁ ସ୍ଥାନରେ, ସକଳ ଅବସ୍ଥାରେ ମନର କାର୍ଯ୍ୟ ମନ କରି-ପାରେ । ମନର ଭାବନାରେ, ବାସନାରେ ଓ ସଂକଳ୍ପରେ କୌଣସି ପ୍ରତିବନ୍ଧକ ରହିପାରେ ନାହିଁ । ଏହି କାରଣରୁ ମତେ ପ୍ରାୟ ଦୁଇବର୍ଷ କାଳ ପାର୍ବତୀପୁର ନିର୍ବାସନ ଦଣ୍ଡଭୋଗ କରି-ବାକୁ ପଡିଥିଲା ।

ମୋ ପକ୍ଷରେ ଏକ ସୁଯୋଗ ଘଟିଥିଲା । ଏଠାରେ ଏକ ବାର୍ଲି ବିଧିବାର ବିବାହ କରାଇ ଦେଇ ପାରିଥିଲେ । ପୁଣି ଦୁଃଖ ସୁଖରେ କୃଷ୍ଣ ଚରଣ ବାବୁଙ୍କ ସଙ୍ଗରେ କାଳ କାଟିଥିଲି । ପାର୍ବତୀପୁର ବିଶାଖାପାଟଣା ଜିଲ୍ଲାନ୍ତର୍ଗତ ଥିବାରୁ ଏଠା କୋର୍ଟ କଚେରୀମାନଙ୍କରେ ଓଡ଼ିଆ ଭାଷା ଚଳେନାହିଁ । ଏଠାରେ ନିବାସ କରି କେତେ ଘର କଂସାରୀ ଥିଲେ । ଏମାନେ କେବଳ ଏହି ଗ୍ରାମର ଓଡିଆ ବାସିନ୍ଦା । ସରକାର ନିୟମାନୁସାରେ ଏମାନଙ୍କୁ ମଧ୍ୟ ଆପଣାର ଦଲିଲ ଦସ୍ତାବିଜ୍ ତେଲୁଗୁ ଭାଷାରେ ଲେଖିବାକୁ ପଡ଼େ ।

ଏକ ବିଶେଷ ଘଟଣା । ଡେଭିସ୍ ନାମରେ ଜଣେ ସାହେବ ଏଠାରେ ସବ୍ କଲେକ୍ଟର ଥିଲେ । ସେହି ସାହେବ ଦିନେ ସାଢ଼େ ଦଶଟା ସମୟରେ ଟ୍ରେଜେରୀ କଚେରୀକୁ ଆସି ଦେଖିଲେ ଯେ କଚେରୀ ବନ୍ଦ ଅଛି । ବନ୍ଦଥିବା କଥା ଇନସ୍-ପେକ୍ଟର ଜେନେରାଲଙ୍କ ଠାକୁ ଲେଖିଦେଲେ । ସେଦିନ ସକାଳଠାରୁ କଚେରୀରେ କିଛି ବିଶେଷ କାମ ସକାଶେ ମୋତେ ଅଧିକକାଳ ରହିବାକୁ ହେଉଥିଲା । ଏହି କୈଫିୟତ ଦେଇ ନିସ୍ତାର ଲାଭ କରିବାକୁ ହେଲା ।

୧୯୦୩ ୧୯୦୪ରେ ମୁଁ ବ୍ରହ୍ମପୁର ଓ ଘୋମଘେଣ୍ଟୁଠାରେ ଅସ୍ଥାୟୀ ସବ୍‌ରେଜିଷ୍ଟ୍ରାର ଥିଲାବେଳେ ରମ୍ଭାଠାରୁ ଟେଲେଗ୍ରାଫ ଆଠଗଡ଼ ରାଜା ସ୍ୱର୍ଗୀୟ ହରିହର ମର୍ଦ୍ଦରାଜ ଦେବଙ୍କ ଅନୁକୂଲରେ ପଣ୍ଡିତ ନୀଳମଣି ବିଦ୍ୟାରତ୍ନଙ୍କ ଦ୍ୱାରା ତୃଣବନ୍ଧୁ ନାମକ ସାପ୍ତାହିକ ପତ୍ର ବାହାରୁଥିଲା । ସେତେବେଳେ ମଞ୍ଜୁଷା ପଣ୍ଡିତ ଗଦାଧର ବିଦ୍ୟାଭୂଷଣ, ଆଠଗଡ଼ ଜଗନ୍ନାଥପୁର ଶାସନ ନିବାସୀ ମହାଦେବ ରାଜଗୁରୁ ରାଜ-ପୋଷକତା ପାଇ ରମ୍ଭାଠାରେ ଅବସ୍ଥାନ କରୁଥିଲେ । ସେତେବେଳେ ଏମାନଙ୍କ ସହିତ ମୋର ଘନିଷ୍ଠ ସମ୍ବନ୍ଧ ସ୍ଥାପିତ ହୋଇଥିଲା ।

ନୀଳମଣି ବିଦ୍ୟାରତ୍ନଙ୍କ ପ୍ରସ୍ତାବ ଓ ବିଦ୍ୟାଭୂଷଣ ଆଦି ପଣ୍ଡିତ ମାନଙ୍କ ସାହାଯ୍ୟ ଓ ଅନୁମୋଦନ କ୍ରମେ ରମ୍ଭା ଛାପାଖାନାରୁ "ସଂସ୍କାରକ" ନାମକ ଏକ ମାସିକ ପତ୍ର ପ୍ରକାଶର ଯୋଗାଡ଼ କରାଗଲା । ଏହି ସଂସ୍କାରକ ପ୍ରକାଶର ପ୍ରାଥମିକ ବ୍ୟୟଭାର ମୁଁ ବହନ କରିବାକୁ ସ୍ୱୀକାର କଲି । ମୋ ପାଖେ ଟଙ୍କା ନଥିଲା । ମନ୍ଦାର ଆସି ଗଙ୍ଗାପାଣି ପଣ୍ଡାଙ୍କ ଠାରୁ ଦେଢ଼ଶହ ଟଙ୍କା ଋଣ କରି ନେଲି । ସଂସ୍କାରକ ବାହାରିଲା । ଗଦାଧର ବିଦ୍ୟାଭୂଷଣ ତହିଁରେ ସମ୍ପାଦକ ଏବଂ ମହାଦେବ ରାଜଗୁରୁ କୋଷାଧ୍ୟକ୍ଷ ହେଲେ । ଏହି ପତ୍ର ଟେକ୍ନିକ ଏକବର୍ଷ ପର୍ଯ୍ୟନ୍ତ ବାରମାସରେ ବାରଟି ସଂଖ୍ୟା ବାହାରିଥିଲା । ସଂସ୍କାର ପ୍ରୟାସୀ ଅନେକ ଗଣ୍ୟମାନ୍ୟ ଲୋକ ଏହାର ଲେଖକ ହେଲେ ।

ଏହି ସମୟରେ ଏହି ସଂସ୍କାରକ ବିରୋଧରେ ବଙ୍କଟେମୁଣ୍ଡି ଗଡ଼ ଠାରୁ ବସନ୍ତ ରାଜାଙ୍କ ଆନୁକୂଲ୍ୟରେ ପଣ୍ଡିତ କାଶୀନାଥ ରାଜଗୁରୁଙ୍କ ସମ୍ପାଦକତ୍ୱରେ 'ସମାଜମିତ୍ର' ନାମରେ ଏକ ମାସିକ ପତ୍ର ବାହାରିଲା । ଏଥିରେ ବିଦ୍ୟାରତ୍ନ ଓ ମୋ ନାମରେ ଅସ-ଜନୋଚିତ ବିଦ୍ରୂପ ଗାଳି ଇତ୍ୟାଦି କରାଗଲା । କିଛିକାଳ ପରେ 'ସଂସ୍କାରକ' ସଙ୍ଗେ ସଙ୍ଗେ 'ସମାଜମିତ୍ର' ମଧ୍ୟ ଲୁପ୍ତ ହେଲା । ଚମ୍ଭାଠାରୁ ସଂସ୍କାରକର ପ୍ରକାଶ, ପୁଣି ପାଙ୍କଶପୁର ଠାରେ ଏକ ବିଧବାର ବିବାହ—ଏହି ଦୁଇ ଘଟଣା ଯୋଗୁ ମୁଁ ସଂସ୍କାର ପ୍ରୟାସୀ ନାମରେ ପରିଚିତ ହୁଏ ଏବଂ ରକ୍ଷଣଶୀଳ ଲୋକମାନଙ୍କ ଦ୍ୱାରା ବିଦ୍ରୂପିତ ହେଉଥାଏ । ୧୯୦୫ ଜୁଲାଇରେ ଯେତେବେଳେ ପାଙ୍କଶପୁର ଠାରୁ ପୁରୁଷୋତ୍ତମପୁରକୁ ମୋର ସ୍ଥାନାନ୍ତର ହେଲା ସେତେବେଳେ ପୁରୁଷୋତ୍ତମପୁରରେ ବିଧବା ବିବାହାକାଂକ୍ଷୀ ସଂସ୍କାରକ ବୋଲି ମୋ ପ୍ରତି ସମସ୍ତେ ଅଙ୍ଗୁଳି ନିର୍ଦ୍ଦେଶ କଲେ । ମୋର ଯଦି ସରକାରୀ କର୍ମଚାରୀର କ୍ଷମତା ନଥାନ୍ତା, ବୋଧହୁଏ ଏଠାରେ ବ୍ରାହ୍ମଣମାନେ ମୋ ପ୍ରତି ବିଦ୍ୱେଷ ରଖି ମୋ ଉପରେ ଢେଲା ପଥର ଫିଙ୍ଗିଥାନ୍ତେ ।

ଆର୍ତ୍ତି ମହାପାତ୍ର ନାମକ ବିଧବା ବିବାହ କରିଥିବା ଲୋକର ଘର ପୁରୁଷୋତ୍ତମପୁର ନିକଟ ପାଣ୍ଡିଆ ଗ୍ରାମରେ । ତାହାର ବଂଶ ଓ ଜ୍ଞାତିଲୋକ ପୁରୁଷୋତ୍ତମପୁରରେ ଥିଲେ । ଏହି ଦମ୍ପତି ନିମନ୍ତେ ନିକଟବର୍ତ୍ତୀ କୁମାରୀ ଗ୍ରାମରେ ଭୂମି ନିଆ ଯାଇଥିଲା । ଏହିସବୁ

କାରଣରୁ ପୁରୁଷୋତ୍ତମର ବ୍ରାହ୍ମଣମାନେ ମୋ ପ୍ରତି ବିରକ୍ତ ଓ ଖଡ୍ଗହସ୍ତ ଥିଲେ ।

ସେ ସମୟରେ ଆମ୍ଭ ପଡ଼ିଶା ଘରେ ଏକ ବିଧବା ନିବାସ କରିଥାଏ । ତାହାର ଏକ ବାଳବିଧବା କନ୍ୟା ଥାଏ । ମୁଁ ପୁରୁଷୋତ୍ତମପୁରଠାରେ ରହିବା ଦେଖି ସେହି ବିଧବାର ଝିଅଟିକୁ ଅନ୍ୟଗ୍ରାମକୁ ପଠାଇ ଦେଲେ । ସେ ଏହି ଶଙ୍କା କଲା ଯେ ଏ ସରକାରୀ ଲୋକ କାଳେ ମୋ ଝିଅକୁ ବିଭା କରିଦେବ । ଏହି ଗ୍ରାମର ଗଣ୍ୟମାନ୍ୟ ଲୋକମାନେ ନିତାନ୍ତ ସ୍ୱାର୍ଥପର, ପରଧନାକାଂକ୍ଷୀ, ଜାତୀୟ ଉନ୍ନତି ଓ ଲୋକୋପକାର କାର୍ଯ୍ୟରେ ଏକାନ୍ତ ଉଦାସୀନ ଏବଂ ସଂସ୍କାର କାର୍ଯ୍ୟରେ ପ୍ରଧାନ ବିରୋଧୀ । ଏମାନେ ମୋ ସଙ୍ଗେ ନାନାବିଧ ସଂସ୍କାର ପ୍ରସ୍ତାବ କରନ୍ତି । ସଂସ୍କାର କରିବାକୁ ଦୃଢ଼ ପ୍ରତିଜ୍ଞା କରନ୍ତି, କିନ୍ତୁ ପରୋକ୍ଷରେ ମୋର ନିନ୍ଦାକରି ମୋର କାର୍ଯ୍ୟରେ ପ୍ରଧାନ ପ୍ରତିବନ୍ଧକ ହୁଅନ୍ତି । ଏଠାରେ ଶିକ୍ଷିତ ଲୋକମାନେ ମଧ୍ୟ ଅତ୍ୟନ୍ତ ଉଦାସୀନ ।

ମୁଁ ରସୁଲକୁଣ୍ଡାଠାରେ ୧୯୦୨ ସାଲରେ ଅସ୍ଥାୟୀ ସବ୍‌ ରେଜିଷ୍ଟ୍ରାର ଥିଲାବେଳେ କେତେଜଣ ବନ୍ଧୁଙ୍କୁ ଘେନି ବିଧବା ବିବାହ ସଂସ୍କାରର କିଛି ଆନ୍ଦୋଳନ କରିଥିଲି । ଧୂଆଁଗ୍ରାମୀ ପଣ୍ଡିତ ହରିହର ଦାଶ, ହରିହର ତ୍ରିପାଠୀ (ବର୍ତ୍ତମାନ ହରିହର ସଦସ୍ୟ) ପାଟ୍ଟୁଲୀପାଡ଼ା ନିବାସୀ ବିନାୟକ ମହାପାତ୍ର ଏବଂ ତନ

ଜଙ୍କୁ ଯେଉଁ ନାନାବିଧ ସ୍ମୃତିର ଉଦ୍‌ଘାଟନ ପୂର୍ବକ ବିଧବା ବିବାହ ସପକ୍ଷରେ ଏକ ଦୀର୍ଘ ପ୍ରବନ୍ଧ ରଚନା କରି କଟକ ବିଶ୍ୱନାଥ ବାବୁଙ୍କ ଦ୍ୱାରା ଛପାଇ ସମଗ୍ର ଉତ୍କଳ ଦେଶର ଗଣ୍ୟ-ମାନ୍ୟ ବ୍ୟକ୍ତିମାନଙ୍କ ନିକଟକୁ ପଠାଇ ଉକ୍ତ ସଂସ୍କାର ପ୍ରତି ସେମାନଙ୍କର ସାହାଯ୍ୟ ସହାନୁଭୂତି ଭିକ୍ଷା କରିଥିଲେ । ସେଥିରେ ମୋର ଶାରୀରିକ ଓ ମାନସିକ ପରିଶ୍ରମ ବାହାରେ ୨୫ ଟଙ୍କା ପର୍ଯ୍ୟନ୍ତ ଖର୍ଚ୍ଚ ହୋଇଥିଲା । କିନ୍ତୁ କାହାରି କଠୁ ସାହାଯ୍ୟ ବା ସହାନୁଭୂତି ଦେଖାଗଲାନାହିଁ । ଏହି ସଂସ୍କାର ପ୍ରତି ଯେତେ-ବେଳେ ଶିକ୍ଷିତ ବ୍ୟକ୍ତିମାନେ ଉଦାସୀନ, ଅଶିକ୍ଷିତ ସାଧାରଣଙ୍କ ଠାରୁ ସହଯୋଗିତା ଆଶା କରିବା ବିଡ଼ମ୍ବନା ମାତ୍ର । ପୁରୁ-ଷୋତ୍ତମପୁର ସଂସ୍କାର ବିରୋଧୀ ହେବା ବିଚିତ୍ର ନୁହେଁ ।

ପୁରୁଷୋତ୍ତମପୁର ଗ୍ରାମର ଲୋକେ ବହୁକାଳରୁ ତେଲଗୁ ଆଧିପତ୍ୟ ସ୍ୱୀକାର କରି ଆସୁଥିଲେ । ନିଜ ମାତୃଭାଷା ପ୍ରତି ଏମାନଙ୍କର ଦୃଷ୍ଟି ନଥାଏ । ଅଧା ତେଲଗୁ ଅଧା ଓଡ଼ିଆ କରି କଥା କହନ୍ତି । ତେଲଗୁ ଅକ୍ଷରରେ ସ୍ୱାକ୍ଷର କରି ଜାଣିଲେ, ମାଲିମକଦ୍ଦମା, ଦାଙ୍ଗା, ଦରବାର କୁଶଳୀ ହେଲେ ଆପଣାକୁ ଗଣ୍ୟମାନ୍ୟ ପଣ୍ଡିତ ଜ୍ଞାନ କରନ୍ତି । ଏମାନଙ୍କ ଠାରେ ସ୍ୱଜାତୀୟ ଅଭିମାନ ଦେଖାଯାଉ ନଥିଲା । ଏଠାରେ ଅନେକ ଧନୀଲୋକ ନିବାସ କରନ୍ତି । ଏମାନଙ୍କ ମଧ୍ୟରେ ବଟକୃଷ୍ଣ ମହାପାତ୍ରେ ଜଣେ ମାତ୍ର ଇଂରାଜୀ ଭାଷାରେ ଉଚ୍ଚଶିକ୍ଷା ପ୍ରାପ୍ତ ହୋଇଥିଲେ । ଏଠାରେ

ଲୋକମାନେ ଚେଲଗୁ ମାନଙ୍କ ସଙ୍ଗ ଉକ୍ତ ମନରୁ ଆପଣାର ଜାଣିପ୍ପ ଘର ପାଶେରି ପକାଇଛନ୍ତି । ମୋର ପୂର୍ବବର୍ତ୍ତୀ ସବ-ରେଜିଷ୍ଟ୍ରାର ଶ୍ରୀଯୁକ୍ତ ନରସିଂହ ଦାଶ ବହୁ ଶ୍ରମ ସ୍ୱୀକାର କରି ଏଠାରେ 'ମର୍ଦ୍ଦରାଜ ରଙ୍ଗାଳୟ' ନାମକ ଏକ ନାଟ୍ୟଶାଳା ସ୍ଥାପନ କରାଇଥିଲେ । ଗ୍ରାମ କରଣ ପିଣ୍ଡିକ ପଟ୍ଟନାୟକ ଏବଂ ଚୌଳିକ ବ୍ୟବସାୟୀ ପିଣ୍ଡିକ ଚନ୍ଦ୍ର ସାହ ନାଟକ ଦଳର ପ୍ରଧାନ ଲୋକ ଥିଲେ । ନରସିଂହ ଦାଶ ଏହି ସ୍ଥାନରେ ପ୍ରାୟ ଚାରିବର୍ଷ ଥିଲେ । ଏହାଙ୍କର ସ୍ଥାନାନ୍ତରରେ ବହୁଲୋକ ଦୁଃଖିତ ହେଲେ । ମୁଁ ଏଠାରେ ଏହାଙ୍କ ସ୍ଥାନାଭିଷିକ୍ତ ହୋଇ ନାଟକାଦି ସମସ୍ତ ଅନୁଷ୍ଠାନରେ ଯଥାସାଧ୍ୟ ଯୋଗ ଦେଉଥାଏ । ଏହି ସମୟରେ 'ଶଶିକଳା ପରିଣୟ' ନାମରେ ବଧବା ବିବାହର ପୋଷକତା କରି ନାଟକ ରଚନା କରିଥିଲି । ଏହି ନାଟକଟି ଥରେ ମାତ୍ର ଏହି ରଙ୍ଗମଞ୍ଚରେ ଅଭିନୀତ ହୋଇଥିଲା । ଏଥିରେ ସାମାଜିକ ଅନେକ ଦୁର୍ନୀତିର ପ୍ରକାଶ ପାଇବା ଦେଖି ଅନେକ ରକ୍ଷଣଶୀଳ କୁସଂସ୍କାରୀ ବ୍ରାହ୍ମଣ ରଙ୍ଗାଳୟ ପରିତ୍ୟାଗ କରିଯାଇଥିଲେ । ପୁଣି ଅନେକ ମୋ ପ୍ରତି ବିରକ୍ତ ହୋଇଥିଲେ । ଏମାନଙ୍କ ଆକ୍ଷେପ ପ୍ରତି, ବ୍ୟବହାର ପ୍ରତି ମୋର ଭ୍ରୂକ୍ଷେପ ନ ଥିଲା । ଏଠାକାର ଲୋକଙ୍କ ଆଗ୍ରହ ମତେ ସୁଖ ଲାଗେନାହିଁ । ଅନେକବାର ଛୁଟି ନେଇ ବାହାରେ ଯାଉଥାଏ । ଏହି ଗ୍ରାମରୁ ସ୍ଥାନାନ୍ତରିତ ହେବାପାଇଁ ବହୁ ଚେଷ୍ଟା କରୁଥାଏ । ବଧବାର

ପାଣି ଗ୍ରହଣ କରିଥିବା ଅର୍ଦ୍ଧ ମହାପାତ୍ର ନିଜ ସ୍ତ୍ରୀ ବୈଦେହୀ ସହିତ ଏଠାରେ କିଛିକାଳ ନିବାସ କରିଥିଲେ । ଏଠାରେ ଲୋକ ମାନେ ଏହି ଦମ୍ପତି ପ୍ରତି ଙ୍ଖିଙ୍ଗହସ୍ତ ଥାଆନ୍ତି । କିନ୍ତୁ ମୋ ଉପରେ ସେମାନଙ୍କର କିଛି କ୍ଷତି କରି ପାରି ନଥାନ୍ତି ।

ଆମ ଭଉଣୀଇ ଦାଶରଥି ସାମନ୍ତରାୟ ନିତାନ୍ତ ଗରିବ ହୋଇ ଏକାନ୍ତ ଅଭାବଗ୍ରସ୍ତ ହେବା ଦେଖି ଆସିକା ଓକିଲ ହରି-ହର ପଣ୍ଡାଙ୍କଠାରୁ କରଜ କରି ଏହାଙ୍କୁ ୨୦୦ ଟଙ୍କା ଦେଇଥିଲି । ଏ ଜଣେ ବିଳାସୀ,ଆଳସ୍ୟ ପରିପୂର୍ଣ୍ଣ ଓ ଅଯଥା ବ୍ୟୟଶୀଳ ବ୍ୟକ୍ତି ଥିବାଯୋଗୁଁ ମୋର ସାହାଯ୍ୟ ପାଇ ସୁଦ୍ଧା କୌଣସି ଉନ୍ନତି କରିପାରି ନଥିଲେ । ଏହାଙ୍କ ପ୍ରତି ମୋର ସାହାଯ୍ୟ ଦାନଟା ପାଉଁଶରେ ଘିଅ ଢାଳିବା ପରି ହୋଇଥିଲା । ଜଣକୁ ଜଣେ କିଛି କରି ଦେଇ ନପାରେ । ଯାହାର କର୍ମଫଳ ଯାହା ଅବଶ୍ୟ ଭୋଗକରେ ।

ପୁରୁଷୋତ୍ତମପୁରଠାରେ ବାଳିକାମାନଙ୍କ ଶିକ୍ଷା ସକାଶେ କୌଣସି ବିଦ୍ୟାଳୟ ନଥିଲା । ସ୍ତ୍ରୀ ଶିକ୍ଷାହିଁ ସାମାଜିକ ଉନ୍ନତିର ମୂଳ ଭିତ୍ତି । ବାଳିକା ମାନଙ୍କୁ ବିଦ୍ୟାଶିକ୍ଷା ଦିଆନଗଲେ ସମାଜ ସଂସ୍କାର ବା ଦେଶର ଉନ୍ନତି ସାଧନ କରିହେବା ଅସମ୍ଭବ । ଏହାଭାବି ମୁଁ ଏହି ଗ୍ରାମରେ ଏକ ବାଳିକା ବିଦ୍ୟାଳୟ ସ୍ଥାପନ କରିବାକୁ ବହୁତ ଚେଷ୍ଟାକଲି । ଅମୁଣିଆ ସାହିରେ ଗୋଟିଏ କୋଠାଘର ଥିଲା । ତହିଁର ଏକ ଅଂଶରେ କେହିଜଣେ ଦୋକାନ

ଖୋଲିଥିଲା । ଅନ୍ୟ ଅଂଶଟା ଭାଙ୍ଗି ପଡ଼ିଥିଲା । ସେହି ଦୋକାନ ସେଠାରୁ ଉଠାଇ ନେଇ ଘରଟା ମରାମତି କରିଦେଇ ତହିଁରେ ବାଳିକା ବିଦ୍ୟାଳୟ ସ୍ଥାପନ କଲି । ମୃତ୍ୟୁଞ୍ଜୟ ଚଟ୍ଟୋପାଧ୍ୟାୟ ଓ ବ୍ରଜସୁନ୍ଦର ଚଟ୍ଟୋପାଧ୍ୟାୟ କଷ୍ଟି କଷ୍ଟି ଚୋଷୁଣା କରି ଅଗ୍ରଣୀ ହୋଇ ବୁଲୁଥିଲେ । ଏହି ଦୁଇଜଣଙ୍କୁ ଶିକ୍ଷକ ରୂପେ ନିଯୁକ୍ତ କରାଗଲା । ସାଧାରଣ ଗୃହରୁ ୫ ଟଙ୍କା ଓ ମୁଁ ଦିଏ ୫ ଟଙ୍କା ଏହିପରି ଦଶଟଙ୍କା ମାସିକ ବ୍ୟୟରେ ସେ ସ୍କୁଲଟି ପରିଚାଳିତ ହେଲା । ବେଳକୁ ସ୍ତ୍ରୀମାନେ ଯ ଚାହାଇ ପାଠପଢ଼ି ଆସନ୍ତି । କିନ୍ତୁ ଓଡ଼ିଆ ସ୍ତ୍ରୀମାନେ ଧଚ୍ଛୁଆଁ ବଅନ୍ତି ନାହିଁ । ଓଡ଼ିଆ ବାଳିକାମାନଙ୍କୁ କଣ୍ଢେଇ ଖୋଥିଟେ, ମିଠାଇ ଇତ୍ୟାଦି ଦେଇ ସଂଗ୍ରହ କରିବାକୁ ପଡ଼େ । ବଜାର ପାଖ ନଦୀତଟ ଲୋକାଲ ଫଣ୍ଡ ବଙ୍ଗଳା ନିକଟରେ ସରକାରଙ୍କର ଏକ ପାଉଣ୍ଡଘର ବା କାଞ୍ଜି ହାଉସ୍ ଥିଲା । କାଞ୍ଜି ହାଉସ ଅନ୍ୟ ସ୍ଥାନକୁ ଘୁଞ୍ଚିଲା । ଜିଲ୍ଲାବୋର୍ଡ ପ୍ରେସିଡେଣ୍ଟ ଓ କଲେକ୍ଟର ସାହେବଙ୍କ ଅନୁମତିପାଇ ସେହି ଘରଟାର ଯଥାସମ୍ଭବ ପରିବର୍ତ୍ତନ ଓ ମରାମତି କରିଦେଇ ତହିଁରେ ଉକ୍ତ ବାଳିକା ବିଦ୍ୟାଳୟ ସ୍ଥାପନ କଲି । ବେଞ୍ଚ, ଚଉକି ଇତ୍ୟାଦି ଉପକରଣ ଯୋଗାଇଦେଲି । କିନ୍ତୁ ସ୍ତ୍ରୀ ଶିକ୍ଷା ବିରୋଧୀ କେଉଁ ଦୁଷ୍ଟ ଲୋକ ନିଆଁ ଲଗାଇଦେଇ ଉକ୍ତ ଘରଟାକୁ ପୋଡ଼ି ପକାଇଲା । ତାପରେ ପୁଣି କିଛି ଟଙ୍କା ଖର୍ଚ୍ଚ କରି ଉକ୍ତ ଘର ତିଆରି କରିବାକୁ ପଡ଼ିଲା । ଏହିପରି ଅନେକ ବାଧା ବିଘ୍ନ, ବିଦ୍ରୂପ ଓ ଠଟ୍ଟା ଉପହାସ ସହ୍ୟକରି ବିଦ୍ୟାଳୟଟିକୁ ବଞ୍ଚାଇ ରଖିଥିଲି । ଏହି ସମୟରେ ବାଳିକାସ୍କୁଲ ସମୂହର ଇନ୍‌ସ୍ପେକ୍ଟର

ମହୋଦୟଙ୍କ ଶୁଭଦୃଷ୍ଟି ପଡ଼ିଲା । ଉକ୍ତ ସ୍କୁଲଟି ସରକାରୀ ସ୍କୁଲ ରୂପେ ଗୃହୀତ ହେଲା । ସେଥି ସକାଶେ ଆମ୍ଭମାନଙ୍କୁ ଆଉ ଚନ୍ଦା ବା ବ୍ୟୟ କରିବାକୁ ପଡ଼ିଲାନାହିଁ । ଈଶ୍ୱର ସର୍ବଦା ସତ୍କର୍ମ ସତ୍କାର୍ଯ୍ୟର ସହାୟ ହୁଅନ୍ତି । ଏହି ସ୍କୁଲ ସ୍ଥାପନରେ ମତେ ପ୍ରାୟ ୨୦୦୦ଟଙ୍କା ଖର୍ଚ୍ଚ କରିବାକୁ ପଡ଼ିଥିଲା । ପୁଣି ଦୁଇବର୍ଷକାଳ ଚନ୍ଦା ଓ ପରିଶ୍ରମ କରିବାକୁ ପଡ଼ିଥିଲା । ପରିଶେଷରେ କୃତକାର୍ଯ୍ୟ ହୋଇ ଅମୃତପ୍ରସାଦ ଲାଭ କରିବାକୁ ହେଲା । ଦୟାମୟ ପରମେଶ୍ୱରଙ୍କର କୃପାରୁ ସଂକଳ୍ପ ସିଦ୍ଧ ହେଲା । ଅନୁଷ୍ଠାନଟି ସଫଳ ହେଲା ।

ପୁରୁଷୋତ୍ତମପୁର ଠାରେ ଅବସ୍ଥାନ କରୁଥିବା ବେଳେ ଛଅମାସ ସକାଶେ ଦୀର୍ଘଛୁଟୀ ନେଇ ତୀର୍ଥଯାତ୍ରା କରିଥିଲୁ । ଗୟା କାଶୀ ଏବଂ ପ୍ରୟାଗ ପର୍ଯ୍ୟନ୍ତ ଯାଇ ଫେରିଥିଲୁ । ଆହ୍ଲାବାଦ ଠାରେ ମୋର ସ୍ତ୍ରୀଙ୍କର ଚକ୍ଷୁରେ ପୀଡ଼ା ହେବାରୁ ଆଉ ଦୂରକୁ ଯାଇ ନପାରି ସେଠାରୁ ଫେରିଥିଲୁ । ଏହି ତୀର୍ଥ ଯାତ୍ରାରେ ବେଣିହେଲା ରଘୁନାଥ ପାଳ, ସାଦର ଗ୍ରାମ ନିବାସୀ ଫକୀର ମହାପାତ୍ର ସେମାନଙ୍କ ସ୍ତ୍ରୀମାନଙ୍କୁ ସଙ୍ଗରେ ନେଇ ମୋର ସହଯାତ୍ରୀ ହୋଇଥିଲେ । ଆମ୍ଭମାନଙ୍କର ଏହି ତୀର୍ଥଯାତ୍ରା ବୃତ୍ତାନ୍ତ ଉତ୍କଳ ସାହିତ୍ୟରେ ପ୍ରକାଶ କରିଥିଲି ।

୧୯୦୭ ସାଲ ଜୁନ ମାସରେ ଛୁଟି ନେଇ କଟକେଇଙ୍କ ଶ୍ରାଦ୍ଧ କରିବା ସକାଶେ ପଞ୍ଚିବାର ସନ୍ଦ ପୁରୀ ଗଲି । ଏହି ସମୟରେ ଚନ୍ଦନ ଯାତ୍ରା ହେଉଥାଏ । ଶ୍ରାଦ୍ଧ ଅପେକ୍ଷା ଚନ୍ଦନ ଯାତ୍ରାରେ ବେଶୀ ମନ ଥିଲା । ଆମ୍ଭ ଘରେ ଶ୍ରାଦ୍ଧ ଉତ୍ସବରେ

ଜ୍ଞାତି ଓ ନିକଟ ବନ୍ଧୁମାନଙ୍କୁ ଡାକି ଭୋଜନ ଦେବା ପୁଣି ବ୍ରାହ୍ମଣମାନଙ୍କୁ ଡାକି ଭୋଜନ ଦେବା ରୀତି ଚିର ପ୍ରଚଳିତ । ଏଥିରେ ପ୍ରାୟ ୫୦/୬୦ ଟଙ୍କା ଖର୍ଚ୍ଚ ହୁଏ । ଏହି ବିଷୟଟା ବାଧେନାହିଁ, କିନ୍ତୁ ଏଥିରେ ଯେଉଁ ବୃଥା ହୟରାଣ, କ୍ଲେଶ ଓ ମନସ୍ତାପ ଭୋଗ କରିବାକୁ ପଡ଼େ ତାହା କେବଳ ବାଞ୍ଛନୀୟ ନୁହେଁ । ଅବିଦ୍ୟ, ଅର୍ଥଲୋଭୀ, ଉଦରମ୍ଭରୀ ଶାସନୀ ବ୍ରାହ୍ମଣ ମାନଙ୍କୁ ବରଣ କରି ଆଣି ଭୋଜନ ଦେବାକୁ ହୁଏ । ଏମାନେ ଭୋଜନ ସମୟରେ ଲୁଚି କଳି କଜିଆ କରି ଉଚ୍ଛିଷ୍ଟ ସାମଗ୍ରୀ ବୋହି ନେବାକୁ ଶଙ୍କିତ ଓ ଲଜ୍ଜିତ ହୁଅନ୍ତି ନାହିଁ । ଶାସନୀ ବ୍ରାହ୍ମଣମାନଙ୍କର ବିଦ୍ୟା ବିଭବ, ସମ୍ମାନ ଗୌରବ ସବୁ ଗଲାଣି । ଏମାନେ ଆଜି ପୂର୍ଣ୍ଣ ନିରକ୍ଷର, ଲୋଭୀ କୁକ୍ଷିମ୍ଭରୀ, ଦ୍ୱେଷହିଂସାକାରୀ ତାମସୀ ଓ ନାମଧାରୀ ବ୍ରାହ୍ମଣ । ଦ୍ୱାରେ ଦ୍ୱାରେ ଭିକ୍ଷା ମାଗିବା ଏବଂ ପ୍ରେତ ସାମଗ୍ରୀ ଖାଇ ବୁଲିବା ହିଁ ଏମାନଙ୍କର ବୃତ୍ତି ବା ଜୀବିକା । ଏମାନଙ୍କୁ ଭୋଜନ ଦେବାରେ ପୁଣ୍ୟ ନାହିଁ ବରଂ ପାପ ଅର୍ଜନ କରିବାକୁ ହୁଏ । ପୁରୀଠାରେ ଅନ୍ନ ପ୍ରତି ଦୃଷ୍ଟି ବା ସ୍ପର୍ଶ ଦୋଷ ଧରାଯାଏ ନାହିଁ । ଗୋପାଳ ବା ନାପିତ ହସ୍ତରେ କିଛି କିଛି ଅନ୍ନ କିଣି ନେଇ ମାର୍କଣ୍ଡେୟାଦି ତୀର୍ଥ ସ୍ଥାନରେ ଶ୍ରାଦ୍ଧ କରିଦେଲେ ହୁଏ । ପୁଣି ଶ୍ରାଦ୍ଧ ପଦ୍ଧତି ମଧ୍ୟ ସରଳ, ସଂକ୍ଷିପ୍ତ ଏବଂ ସାର୍ବଜନୀନ । ପୁଣି ଶ୍ରାଦ୍ଧ ବିଧାନରେ ବ୍ୟୟ ସଂକୋଚ ସଙ୍ଗେ ସଙ୍ଗେ ସୁବିଧା ଓ ସୁଖ ସ୍ୱାଚ୍ଛନ୍ଦ୍ୟ ଲାଭ ହୁଏ । ପୁରୀଠାରେ ଫାଣ୍ଡବନ ରହିଲୁ । ଏହି ପୁଣ୍ୟକ୍ଷେତ୍ରରେ ବିଦେଶୀ ଯାତ୍ରୀ ସ୍ତ୍ରୀ ମାନଙ୍କ ପ୍ରତି କଠୋର ଅବରୋଧ ପ୍ରଥା ପାଳିତ ହୁଏ ନାହିଁ ।

ମୁଁ ମେ ହରଗ ସ୍ତ୍ରୀ ସନ୍ତ୍ରିତ ଚମ ଗତ ବଡ଼ଦେଉଳ ଠାରେ, ସାଗର ତୀରରେ କମ୍ବା ବଜାରରେ ଅବାଧରେ ଭ୍ରମଣ କରୁଥାଏ । ଆମ ଦେଶରେ ସ୍ତ୍ରୀଭନ୍ଦୂଠାରୁ ସ୍ୱାଧୀନତାଜ୍ୟୋତି ଅପହୃତ ହୋଇଅଛି । ସେମାନେ ଅନ୍ଧାର କୋଣେ ପଡ଼ି ପଡ଼ି ଯାଉଛନ୍ତି । କେବଳ ପୁଣ୍ୟକ୍ଷେତ୍ର ତୀର୍ଥ ସ୍ଥାନ ମାନଙ୍କରେ ଟିକିଏ ନିଶ୍ୱାସ ଛାଡ଼ ସ୍ୱାତନ୍ତ୍ର୍ୟ ସହକାରେ ମୁକ୍ତ ପ୍ରଦେଶରେ ଇଚ୍ଛା ବିଚରଣ କରିବାକୁ ସମୟ, ସୁବିଧା ଏବଂ ଅଧିକାର ପାଇଥାନ୍ତି ।

ଆମ୍ଭେମାନେ ପୁରୀରେ ପାଞ୍ଚଦିନ ମାତ୍ର ରହିଥିଲୁ । ଏକ ଦିନ ମୁକ୍ତିମଣ୍ଡପ ଦର୍ଶନ କରିବାକୁ ଯାଇ ଦେଖିଲୁ ଯେ କେତେଜଣ ନିରକ୍ଷର ମୂର୍ଖ ବ୍ରାହ୍ମଣ ମଣ୍ଡପ ଉପରେ ବସି ଯାତ୍ରୀମାନଙ୍କଠାରୁ ପଇସା ଭେଟି ନେଇ ମଣ୍ଡପରେ ସେମାନଙ୍କର ମୁଣ୍ଡ ଲଗାଇ ଦେଉଥାନ୍ତି । ଚୂନ ପଥର ମଣ୍ଡପରେ ମୁକ୍ତି ନ ଥାଏ । ମୁକ୍ତି ମଣ୍ଡପ ଉପରେ ପଣ୍ଡିତମାନେ ବସି ଲୋକ ମଙ୍ଗଳ କାମନାରେ ଯେଉଁ ବ୍ୟବସ୍ଥା ଦିଅନ୍ତି ତାହାହିଁ ମୁକ୍ତି ଦାୟକ । ଶୁଣି ପାରିଲୁ ଯେ ନିରକ୍ଷର ମୂର୍ଖ ହେଲେ ସୁଦ୍ଧା ପୁରୀ ନିକଟ ୧୬ ଶାସନ ବ୍ରାହ୍ମଣ ବ୍ୟତୀତ ଅନ୍ୟ କେହି ଯେତେ ପଣ୍ଡିତ ହେଲେ ସୁଦ୍ଧା ମୁକ୍ତି ମଣ୍ଡପ ଉପରେ ବସି ପାରନ୍ତି ନାହିଁ । ଏହି ବ୍ୟବସ୍ଥା ଓ ବିଷୟରେ ଆଉ ପରିବର୍ତ୍ତନ ନାହିଁ । ପଣ୍ଡିତମାନେ ଏହି ମୁକ୍ତି-ମଣ୍ଡପରେ ବସି ପୂଜା ଉପାସନା ଶୌଚାଶୌଚ ତିଥିବାର ନକ୍ଷତ୍ର ଇତ୍ୟାଦି ବିଷୟରେ ଆଲୋଚନା କରନ୍ତି । ତର୍କ ବିତର୍କ

ବାଗ୍‌ବିତଣ୍ଡା କରନ୍ତି । କିନ୍ତୁ ଦେଶର ଉନ୍ନତି ସାଧନ ମାର୍ଗ ପୃଥକ । ବାଲ୍ୟ ବିବାହ, ଚିର ବୈଧବ୍ୟ, ଅପଥା ଜନ୍ମଗତ ଜାତିଭେଦ, ସ୍ତ୍ରୀମାନଙ୍କର ମୂର୍ଖତା ଓ ଅବରୋଧପ୍ରଥା ଦୂରୀଭୂତ ନ ହେଲେ ଏବଂ ବ୍ରହ୍ମଚର୍ଯ୍ୟ ଅବଲମ୍ବନ ନ କଲେ ଦେଶ ବା ଜାତିର ଉନ୍ନତି ଅସମ୍ଭବ ।

ପୁରୀଠାରୁ ଖଲିକୋଟ ଫେରିଲୁ । ସେଠାରେ ବାଲ୍ୟସ୍ନେହୀ ସହାଧ୍ୟାୟୀ ବର୍ତ୍ତମାନ ଖଲିକୋଟ ସିରସ୍ତାଦାର ଶ୍ରୀଯୁକ୍ତ ବଳଭଦ୍ର ମହାପାତ୍ରଙ୍କ ଆତିଥ୍ୟ ଗ୍ରହଣ କଲି । ଶ୍ୱଶୁର ନରହରି ଦାସଙ୍କୁ ସଙ୍ଗେଦେଇ ସ୍ତ୍ରୀକୁ ଗ୍ରାମକୁ ପଠାଇ ଦେଇ ମୋର ପ୍ରିୟ ଶିଷ୍ୟ ମଧାର ଗ୍ରାମ ନିବାସୀ ଶ୍ରୀବତ୍ସ ନିପାଠୀଙ୍କୁ ସଙ୍ଗେ ଧରି ସେଠାରୁ ମାନ୍ଦ୍ରାଜ ଗଲି । ଇନସ୍‌ପେକ୍‌ଟର ଜେନେରଲଙ୍କୁ ମୋର ଦୁଃଖକଷ୍ଟ ଜଣାଇ ପୁରୁଷୋତ୍ତମପୁର ଠାରୁ ସ୍ଥାନାନ୍ତର ପାଇବା ଉଦ୍ଦେଶ୍ୟରେ ମୋର ଏଥର ମାନ୍ଦ୍ରାଜ ଯାହାର ଲକ୍ଷ୍ୟ ଥିଲା । ମୋର ଅଫିସ କାର୍ଯ୍ୟ ମୁଁ ଠିକ୍ କରୁଥିଲେହେଁ ରେଜିଷ୍ଟ୍ରାର ପୂର୍ଣ୍ଣୋପ୍ୟା ପାନ୍ତୁଲୁ ଅନେକ ସମୟରେ ମୋ ପ୍ରତି ବିରକ୍ତ ହୋଇଥାନ୍ତି । ଯେତେବେଳେ ମୁଁ ନରସପୁରଠାରେ ପ୍ରବେଶନାରୀ ସବ୍‌ରେଜିଷ୍ଟ୍ରାର ଥିଲିବେଳେ ଇଂରାଜୀ ରସିଦ ଫାର୍ମର ଓଡ଼ିଆ ଅନୁବାଦ କରିଦେବା ପାଇଁ ରେଜିଷ୍ଟ୍ରାର ମୋତେ ଆଦେଶ ଦେଲେ । ମୁଁ ତହିଁର ଅନୁବାଦ କରିଦେଲି । ରେଜିଷ୍ଟ୍ରାର ମୋର ଉକ୍ତ ଓଡ଼ିଆ ଅନୁବାଦକୁ ନେଇ ଅଫିସର ଏକ ତେଲୁଗୁ ଗୁମାସ୍ତା ରାମାପ୍ପା ପାନ୍ତୁଲୁ ଦ୍ୱାରା ସଂଶୋଧନ କରାଇଲେ । ତେଲୁଗୁ ଲୋକମାନେ

ଭଲ ଓଡ଼ିଆ ଜାଣନ୍ତି ନାହିଁ । ଉକ୍ତ ସଂଶୋଧିତ ଅନୁବାଦରେ ମୁଁ ଦସ୍ତଖତ କଲି ନାହିଁ । କାରଣ ମୋସ୍ୱା ଟାନୁଲୁଙ୍କର ଅନୁବାଦ ହେଲା, ମୋର ଅନୁବାଦ ହୋଇ ଥାଉ ରହିଲା ନାହିଁ । ଆଉ ଏକ ସମୟରେ ଦେଶୀ ମିଶ୍ରଣ ଆନ୍ଦୋଳନରେ ମୋର ବିଶେଷ ସମ୍ବନ୍ଧ ଅଛି ବୋଲି ରେଜିଷ୍ଟ୍ରାର ଆଶଙ୍କା କରନ୍ତି । ପୁଣି ପୁରୁଷୋତ୍ତମପୁର ସବ୍‌ରେଜିଷ୍ଟ୍ରାର ଥିଲାବେଳେ ତାହାଙ୍କୁ କେବେ ଦେଖିବାକୁ ଯାଇ ନ ଥାଏ । ତା ଛଡ଼ା ତାହାଙ୍କ ଆଦେଶ ନ ଥାଇ ବଡ଼ ଦିନଛୁଟିରେ ବ୍ରହ୍ମପୁର ଯାଇ ଉତ୍କଳ ସମ୍ମିଳନୀରେ ଯୋଗଦେଇଥିଲି । ଏବଂବିଧ ନାନା କାରଣରୁ ରେଜିଷ୍ଟ୍ରାର ମୋ ପ୍ରତି ବିରକ୍ତ ହୋଇ ମୋ ବିରୋଧରେ ଇନସ୍‌ପେକ୍ଟର ଜେନେରାଲଙ୍କ ନିକଟକୁ ରିପୋର୍ଟ କରିଥିଲେ । ଅତିଭକ୍ତି ଚୋରର ଲକ୍ଷଣ ହେଲେହେଁ କେହି କେହି ଉପରିସ୍ଥ କର୍ମଚାରୀ ନିମ୍ନ କର୍ମଚାରୀ ମାନଙ୍କଠାରୁ ଅତି ଭକ୍ତି ପାଇବାକୁ ଚାହାନ୍ତି । ପୂର୍ବେ ପାର୍ବତୀପୁରରେ ସବରେଜିଷ୍ଟ୍ରାର ଥିଲାବେଳେ ସେଠା ସବ୍ କଲେକ୍ଟର ଜେକସ ସାହେବଙ୍କୁ ମୁଁ କାହିଁକି ଯାଇ ଦର୍ଶନ କରି ନାହିଁ ବୋଲି ସେ ମୋତେ ପ୍ରଶ୍ନ କରିଥିଲେ । ସେତେବେଳେ କହିଥିଲି ଯେ ମୁଁ କାର୍ଯ୍ୟରେ ବ୍ୟସ୍ତ ଥିଲି ଓ କାର୍ଯ୍ୟ ତ୍ୟାଗକରି ଯାଇ ସାହେବଙ୍କୁ ଦର୍ଶନ କରିବା ଆବଶ୍ୟକ ବୋଲି ମନେ କରି ନ ଥିଲି । ଅତଏବ ଦର୍ଶନ କରି ଯାଇ ପାରି ନାହିଁ । ମୋର ଏହି କଥା ଶୁଣି ସାହେବ ମହାଶୟ ରାଗାନ୍ୱିତ ହୋଇ ପଡ଼ିଥିଲେ ।

ମାନ୍ଦ୍ରାଜରେ ୫ ଦିନ ମାତ୍ର ରହିବାକୁ ପଡ଼ିଥିଲା । ସେ ସମୟରେ ସେଠାରେ ବାବୁ ସୋମ ସୁନ୍ଦର ମହାନ୍ତି ବି. ଏ. ବି. ଏଲ୍. ବ୍ୟତୀତ ଅନ୍ୟ କେହି ମୋହର ପରିଚିତ ସ୍ନେହୀ ନ ଥିଲେ । ସୋମ ଭାଇ ମଧ୍ୟ ଆପଣା କାର୍ଯ୍ୟରେ ବ୍ୟସ୍ତ ଥିଲେ । ବେଶୀ ସମୟ ତାହାଙ୍କ ସଙ୍ଗ ଲାଭ କରି ପାରି ନ ଥିଲି । କୌଣସି ଦୋକାନକୁ ଗଲେ ମୁଁ କୌଣସି ନା କୌଣସି ଜିନିଷ କିଣିବାକୁ ଇଚ୍ଛା କରୁଥିଲି । ସଦ୍ୟ ଅନାବଶ୍ୟକ ଥିଲେହେଁ ନାନା ପ୍ରକାର ଦ୍ରବ୍ୟ କିଣି ପକାଇଥାଏ । ଏଣୁ କରି ଅନେକ ସମୟରେ ମୁଁ ନିଜେ ଦୋକାନକୁ ନ ଯାଇ ଅନ୍ୟଦ୍ୱାରା ଆବଶ୍ୟକୀୟ ଜିନିଷ ମଗାଇ ଥାଏ । ମାନ୍ଦ୍ରାଜ ଭାରି ବଡ଼ ସହର । ନାନାବିଧ ପଦାର୍ଥ ଏଠାରେ ମିଳେ । ଏଠାରେ ଏଣୁ ତେଣୁ ପ୍ରାୟ ୫ ୧୦୦ଙ୍କା ରେ ପଦାର୍ଥ କିଣି ପକାଇଥିଲି । ଦେଖାଦେଖିରୁ ଆଉ କଣ ଲାଭ ହୁଏ ? ଦକ୍ଷିଣ ଦେଶରେ ସ୍ତ୍ରୀମାନଙ୍କର ଅବରୋଧ ପ୍ରଥା ନାହିଁ । ସ୍ତ୍ରୀ ପୁରୁଷ ପ୍ରକାଶ୍ୟ ଭାବରେ ରାଜ ମାର୍ଗରେ ଗମନା ଗମନ କରନ୍ତି । ଏପରି କରିବା ଦ୍ୱାରା ସେମାନଙ୍କର ଶିକ୍ଷା ସଭ୍ୟତା ଓ ସାମାଜିକତା ବୃଦ୍ଧି ଲାଭ କରେ ।

ମାନ୍ଦ୍ରାଜରୁ ଫେରି ନିଜ ଗ୍ରାମ ମହାଇ ଠାରେ ଅବଶିଷ୍ଟ ଛୁଟି ସମୟତକ ଅତିବାହିତ କଲି । ଛୁଟି ଶେଷରେ "ପୁନର୍ମୂଷିକୋଭବ" ଙ୍କ ପରି ପୁରୁଷୋତ୍ତମପୁର ଆସି କାର୍ଯ୍ୟରେ ନିଯୁକ୍ତ ହେଲି । ସେତେବେଳେ ସେଠାରେ ଶ୍ରୀମାନ୍ ଶିବରାମ ରଥ ସ୍କୁଲ

ହମ୍ପୁରର ସବ୍‌ଆସିଷ୍ଟାଣ୍ଟ ଇନସପେକ୍ଟର ଥିଲେ । ଏହାଙ୍କ ପିତା ଶ୍ରୀଯୁକ୍ତ ପଣ୍ଡିତ ଭଗବାନ ରଥେ ସମସ୍ତେ ହମସ୍ତ ୧୦ାରେ ରହନ୍ତି । ଏହାଙ୍କ ସହିତ ବିବିଧ ବିଦ୍ୟା ଚର୍ଚ୍ଚା ଓ ସଦାଳାପରେ ଦିନ କଟିଯାଏ । ଏପରି ଜଣେ ବିଚକ୍ଷଣ, ବୁଦ୍ଧିମାନ୍, ସାଧୁ ହଇଶିଷ ପଣ୍ଡିତ ମିଳିବା ଦୁଷ୍କର । ମୁଁ ମୋର ଗ୍ରହାବସ୍ଥାଠାରୁ, ପଣ୍ଡିତ ମହାଶୟ ବ୍ରହ୍ମପୁର ଟ୍ରେନିଂ ନର୍ମାଲ୍ ସ୍କୁଲ ଶିକ୍ଷକରୂପେ ବିଜୟପୁର ଠାରେ ନିବାସ କରୁଥିବା ଦିନାବଧି ଏହାଙ୍କର ଶିଷ୍ୟତ୍ୱ ଲାଭ କରି ବହୁ ସଦଜ୍ଞାନ ଓ ସଦାଚାର ଲାଭ କରିଅଛି । ପଣ୍ଡିତ ମହାଶୟ ମଧ୍ୟ ମତେ ଏ ପର୍ଯ୍ୟନ୍ତ ଆପଣାର ପ୍ରିୟଶିଷ୍ୟ ଜ୍ଞାନ କରିଛନ୍ତି । ମୁଁ ଯେଉଁ ସ୍ଥାନରେ ଥିଲେ ମଧ୍ୟ ସେଠାରେ କେତେ ଗୁଡ଼ିଏ ଶିଷ୍ୟ ସଂଗ୍ରହ କରି ସେମାନଙ୍କୁ ଯାହାକିଛି ବିଦ୍ୟାଶିକ୍ଷା ଦେବାରେ ପ୍ରବୃତ୍ତ ହୁଏ ।

ପୁରୁଷୋତ୍ତମପୁରରେ ମୋ ବସା ଗୃହରେ ସକାଳ ବେଳେ ଏବଂ ସନ୍ଧ୍ୟାବେଳେ କେତେଗୁଡ଼ିଏ ପିଲଙ୍କୁ ସଂଗ୍ରହ କରି ସେମାନଙ୍କୁ ଇଂରାଜୀ ଭାଷା ଶିକ୍ଷା ଦେଇଥାଏ । କପିଳ, ସତ୍ୟବାଦୀ ମାର୍କଣ୍ଡ, ଲକ୍ଷ୍ମୀନାରାୟଣ, କୃଷ୍ଣମୂର୍ତ୍ତି ପ୍ରଭୃତି କେତେ ଜଣ ଛାତ୍ର ମୋ ପାଖେ ରହି ମୋଠାରୁ ପ୍ରଥମେ ଇଂରାଜୀ ଶିକ୍ଷା ଆରମ୍ଭ କରିଥିଲେ । କପିଳ ପାତ୍ରୀ, ସତ୍ୟବାଦୀ ଦାସ ଗ୍ରାମ୍ୟ ସ୍କୁଲମାନଙ୍କରେ ବର୍ତ୍ତମାନ ଶିକ୍ଷକତା କରୁଛନ୍ତି । ମାର୍କଣ୍ଡ ସାହୁ ବ୍ରହ୍ମପୁର କଲେଜରେ ପଢ଼ି ଏଫ୍. ଏ. କ୍ଲାସ ପର୍ଯ୍ୟନ୍ତ ଉଠି ଯାଇଥିଲା । କୃଷ୍ଣ ମୂର୍ତ୍ତି ସବ୍‌ରେଜିଷ୍ଟ୍ରାର ଅଫିସରେ ଗୁମାସ୍ତା ହୋଇ ପାରି-

ଥିଲା । ଏତେବେଳେ ସବଂଶ ସ୍କୁଲ ସ୍ଥାପନ କରି ପୁତ୍ରମାନଙ୍କୁ ଇଂରାଜୀ ଶିକ୍ଷା ଦେବା ମୋର ବଳବତୀ ଇଚ୍ଛା ଥାଏ । କିନ୍ତୁ ମୁଁ ଡେଙ୍କିଷ୍ଟ୍ରି ବିଭାଗରେ ରହିଥିବା ଯୋଗୁଁ ମୋହର ଇଚ୍ଛା ଫଳବତୀ ହୋଇପାରେ ନାହିଁ । ତଥାପି ଯଥା ସାଧ୍ୟ ଚେଷ୍ଟା ସେ ଦିଗରେ କରିଥାଏ ।

ଗୋବରା ନିବାସୀ ଲକ୍ଷ୍ମୀ ନାରାୟଣ ପଟ୍ଟନାୟକ ଓ ଦୁର୍ଗା ମାଧବ ପଟ୍ଟନାୟକଙ୍କ ସାହାଯ୍ୟ ସହାନୁଭୂତି ପାଇ ଆମ୍ଭେମାନେ ଗୋବରା ଠାରେ ଏକ ଗୃହ ନିର୍ମାଣ କରି ଏଥିରେ ସ୍କୁଲ ସ୍ଥାପନ କରିଥିଲୁ । ଏହି ଗୃହନିର୍ମାଣରେ ମୋର ଟ [illegible]୦୦ ଙ୍କା ପର୍ଯ୍ୟନ୍ତ ବ୍ୟୟ ହୋଇଥିଲା । କଟକ ଜିଲ୍ଲାର କ୍ଷେତ୍ରବାସୀ ପ୍ରଧାନ ନାମକ ଜଣେ ଶିକ୍ଷକ ନିଯୁକ୍ତ ହେଲେ । ଏହାଙ୍କୁ ମାସିକ ଟ ୧୫ ଙ୍କା ହିସାବରେ ବେତନ ଦିଆଯାଏ । ଏହି ସ୍କୁଲରେ ପୁତ୍ରେନ୍ଦ୍ର ମାନଙ୍କୁ ଇଂରାଜୀ ଶିକ୍ଷା ଦିଆଯାଉଥିଲା । ବାସୁଦେବପୁର ଶାସନ ବ୍ରାହ୍ମଣମାନଙ୍କର ପ୍ରଥମେ ଯଥେଷ୍ଟ ଉଦ୍ୟମ ଉତ୍ସାହ ଦେଖାଗଲା । କିନ୍ତୁ ଏହି ଉଦ୍ୟମ ବହୁ କାଳ ସ୍ଥାୟୀ ହୋଇପାରିଲା ନାହିଁ । ଶାସନ ବ୍ରାହ୍ମଣମାନେ ପ୍ରେତଟଣା, ବ୍ରାହ୍ମଣ ଭୋଜନ ପାଇଁ ଯେପରି ଦୂର ସ୍ଥାନକୁ ଦଉଡ଼ି ଯାଆନ୍ତି, ବିଦ୍ୟା ଶିକ୍ଷା ସକାଶେ ସେପରି ସ୍କୁଲକୁ ଆସନ୍ତି ନାହିଁ । ଶିକ୍ଷକଙ୍କୁ ପ୍ରାୟ ଦେଢ଼ ବର୍ଷ ପର୍ଯ୍ୟନ୍ତ ମାସିକ ଟ ୧୦/୧୫ ଙ୍କା ଲେଖାଏଁ ମୁଁ ଦେଇଥାଏ ।

ଏହି ଛୁଟିରେ ମୋର ଦଗପୁଡ଼ (ଦଗପହଣ୍ଡି) ସ୍ଥାନାନ୍ତର ହେଲା । ୧୯୦୯ ଜୁଲାଇ ଆରମ୍ଭରୁ ଦଗପହଣ୍ଡି ଗଡ଼ (ଦଗପୁଡ଼

ନ୍ଷ୍ଟ୍ରସନ୍ ଠାରେ କାର୍ଯ୍ୟରେ ପ୍ରବେଶ କରିବାକୁ ହେଲା । ବଡ଼-ଖେମୁଣ୍ଡି ରାଜାଙ୍କର ରାଜଧାନୀ । ସେହି ବର୍ଷ ସେହି ସ୍ଥାନରେ ସବରେଜେଷ୍ଟ୍ରି ଅଫିସ ନୂତନ ସ୍ଥାପିତ ହୋଇଥାଏ । ସେଠାରେ ଅନ୍ୟାନ୍ୟ କୌଣସି ଗଭର୍ଣ୍ଣମେଣ୍ଟ ଅଫିସ ନ ଥିଲା । ଇଂରାଜୀ ଶିକ୍ଷିତ ଗଭର୍ଣ୍ଣମେଣ୍ଟ କର୍ମଚାରୀ କେହି ହେଲେ ସଙ୍ଗୀ ହେବାକୁ ନଥିଲେ । ସେଠାରେ ରାଜାଙ୍କର ଗଜପତି ଯନ୍ତ୍ରାଳୟରୁ 'ଗୁଣ ଦର୍ପଣ' ନାମକ ଏକ ସାପ୍ତାହିକ ସମ୍ବାଦପତ୍ର ପ୍ରକାଶିତ ହୁଏ । ଗୁଣ ଦର୍ପଣ ସମ୍ପାଦକ ମାନମଣି ବିଦ୍ୟାରତ୍ନ ଓ ଲେଙ୍କ ଗୁରୁକବି ରାଜସଭା ପଣ୍ଡିତ ମଧୁସୂଦନ ତର୍କ ବାଚସ୍ପତି, ଚନ୍ଦ୍ରଶେଖର ସାହିତ୍ୟ ରତ୍ନାକର ନୂତନ କବି ଓ ଲେଖକ ଯୁବକ ବନମାଳୀ କବିଚନ୍ଦ୍ର, ବୈଷ୍ଣବ ରାଜଗୁରୁ ଇତ୍ୟାଦି ରାଜ ପରିଷଦମାନେ ମୋର ସଙ୍ଗୀ ହେଲେ ।

ସ୍ଥାନର ଭଲମନ୍ଦ କେବଳ ଅଧିବାସୀର ଅଭ୍ୟାସ ଉପରେ ନିର୍ଭର କରେ । ଯେ କୌଣସି ସ୍ଥାନ ହେଉ ଅଭ୍ୟାସ ଯୋଗୁଁ ସୁଖପ୍ରଦ ହୁଏ । ପୁଣି ସେହି ଅଭ୍ୟାସ ହେତୁ ଦୁଃଖଦାୟକ ହୁଏ । ଅଭାବ ହୁଏ ସକଳ ଉଦ୍‌ଭାବନର କାରଣ । ସର୍ବଦା ଅବସ୍ଥାନୁରୂପ ବ୍ୟବସ୍ଥା କରିବାକୁ ହୁଏ । ନ୍ୟାୟ କିମ୍ବା ଅନ୍ୟାୟ ଭାବରେ ଓ ଖିଆଲମତ କାର୍ଯ୍ୟ କଲେ ଅଧିକାରୀମାନେ ଏବଂ ବଡ଼ ଲୋକମାନେ ମଧ୍ୟ ବିଚଳିତ ହୋଇପଡ଼ନ୍ତି । ଏଥିର କେତେକ ଦୃଷ୍ଟାନ୍ତ ମନେ ପଡ଼ୁଅଛି । ସବ୍‌ରେଜେଷ୍ଟ୍ରି କଚେରୀମାନଙ୍କରେ ଯେଉଁ ଭାଷାରେ ବହୁ ସଂଖ୍ୟକ ଦସ୍ତାବିଜ ଲିଖିତ ହୁଏ ସେହି ଭାଷାରେ କେବଳ

ରେଜିଷ୍ଟ୍ରି ଅଫିସର ଇଣ୍ଡେକ୍ସ ବା ସୂଚିପତ୍ର ଲେଖାଯାଏ । ଗଞ୍ଜାମରେ ସବ୍‌ରେଜିଷ୍ଟ୍ରାର ମାନେ ତେଲୁଗୁ ଲୋକ ଥିବା ଯୋଗୁଁ ସର୍ବତ୍ର ଏହି ନିୟମରେ ବ୍ୟତିକ୍ରମ ଘଟୁଥାଏ । ମୁଁ ରସୁଲକୁଣ୍ଡାରେ କିଛିକାଳ ନିମନ୍ତେ ଅସ୍ଥାୟୀ ସବ୍‌ରେଜିଷ୍ଟ୍ରାର ଥିଲାବେଳେ ସେଠା ସବ୍‌ରେଜିଷ୍ଟ୍ରି ଅଫିସର ଇଣ୍ଡେକ୍ସ ଗୁଡିକ ଓଡ଼ିଆ ଭାଷାରେ ଲେଖିହେଲା । ଏଥିପାଇଁ ଜିଲ୍ଲା ରେଜିଷ୍ଟ୍ରାରଙ୍କର ବିରକ୍ତି ଜନକ ହୋଇଥିଲା । ସ୍ୱର୍ଗୀୟ ସ୍ୱଦେଶ ବତ୍ସଳ ନରସିଂହ ଦାଶ ମଧ୍ୟ ପୁରୁଷୋତ୍ତମପୁର ଅଫିସ ଇଣ୍ଡେକ୍ସ ଓଡ଼ିଆ କରି ଦେଉଥିଲେ ବୋଲି ରେଜିଷ୍ଟ୍ରାରଙ୍କ ସହିତ ତାଙ୍କର ମତାନ୍ତର ସଙ୍ଗେ ସଙ୍ଗେ ମନାନ୍ତର ଘଟିଥିଲା । ଇଣ୍ଡେକ୍ସର ଭାଷା ବଦଳାଇବାକୁ ହେଲେ ବର୍ଷ ପ୍ରାରମ୍ଭରେ କେବଳ ବଦଳାଇବାକୁ ହୁଏ । ମୁଁ ବ୍ରହ୍ମପୁର ଠାରେ ଅସ୍ଥାୟୀ ସବ୍‌ରେଜିଷ୍ଟ୍ରାର ଥିଲାବେଳେ କାଳେ ଇଣ୍ଡେକ୍ସ ଭାଷା ଓଡ଼ିଆ କରିଦେବି ବୋଲି ଶଙ୍କା କରି ଜାନୁୟାରି ପହିଲା ତାରିଖ ପୂର୍ବରୁ ମତେ ଅନ୍ୟ ସ୍ଥାନକୁ ବଦଳାଇ ଦେଇଥିଲେ ।

କିଛିଦିନ ପରେ ଫେର୍ ଏକ ମାସ ପୀଡ଼ିତ ଛୁଟି ପାଇ ଗ୍ରାମକୁ ଗଲି । ଏହି ସମୟରେ ବେଲଗୁଣ୍ଠା ଗ୍ରାମରେ ଏକଜୀବନ ବୀମା କମ୍ପାନି ଥିଲା । ଭଗୀରଥି ଦାସ, ଧର୍ମ ମହାପାତ୍ର, କପିତାନ ବେହେରା, ଆନନ୍ଦ ସାହୁ, ନରସିଂହ ପଣ୍ଡା ଇତ୍ୟାଦି ଅନେକ ଲୋକଙ୍କର ଏହି କମ୍ପାନିରେ ଅଂଶ ଥିଲା । ବେଲଗୁଣ୍ଠା ଠାରେ କୌଣସି ବାଳିକା ବିଦ୍ୟାଳୟ ନଥିବା ଦେଖି ସେଠାରେ ମୁଁ ଏକ ବାଳିକା ବିଦ୍ୟାଳୟ ସ୍ଥାପନ କଲି । ମଧାର ଶ୍ରୀବତ୍ସ ତ୍ରିପାଠୀଙ୍କୁ ଉକ୍ତ ବାଳିକା ସ୍କୁଲର ଶିକ୍ଷକ ନିଯୁକ୍ତ

କରିଗଲା । କମ୍ପାନୀ ଦ୍ୱାରା ମାସିକ ୫୦ଙ୍କା ଓ ମୁଁ ୧୦ ୫ ୫ ଙ୍କା ଏବଂ ଅନ୍ୟ ସାଧାରଣ ଶ୍ରଦ୍ଧାରୁ କିଛି ଆଦାୟ ହୁଏ । ଏହିପରି ସଂଗୃହୀତ ଧନରୁ ସ୍କୁଲ ଘରଭଡ଼ା, ଶିକ୍ଷକ ବେତନ ଓ ଅନ୍ୟାନ୍ୟ ଖର୍ଚ୍ଚ ଚଳିଯାଏ । ପିତାମାତାମାନଙ୍କୁ ବହୁତ ଖୋସାମଦ, କରି ବାଳିକା ମାନଙ୍କୁ ସୋଥିରେ ମିଠାଇ ଖେଳ ଜିନିଷ ଇତ୍ୟାଦି ପାରିତୋଷିକ ଦେଇ ସ୍କୁଲ ସକାଶେ ଛାତ୍ରୀ ସଂଗ୍ରହ କରିବାକୁ ପଡ଼େ । ଏହି ଅନୁଷ୍ଠାନରେ ମୋର ପ୍ରାୟ ୫ ୨୦୦ ଙ୍କା ଖର୍ଚ୍ଚ ହୋଇଥିଲା । ବେଲଗୁଣ୍ଠା ନିବାସୀ ବ୍ରଜବନ୍ଧୁ ତ୍ରିପାଠୀ ଏହି ସ୍କୁଲରେ କିଛି କାଳ ଶିକ୍ଷକତା କରି କିଛି ଟଙ୍କାପାଇ ରହିଥିଲେ । ବର୍ତ୍ତମାନ ସେ ପୁରୀରେ ସଂସ୍କୃତ ଶିକ୍ଷା କରି ଆଜି ଏଠାରେ ପଣ୍ଡିତ ଓ କବିରଜ ନାମରେ ସୁବିଖ୍ୟାତ ହୋଇଛନ୍ତି । ଆନନ୍ଦର ବିଷୟ, ଆଜି ସେହି ବାଳିକା ବିଦ୍ୟାଳୟଟି ଗଭର୍ଣ୍ଣମେଣ୍ଟ ଗାର୍ଲସ୍ ସ୍କୁଲରେ ପରିଣତ ହୋଇଅଛି । ବେଲଗୁଣ୍ଠାରେ ଜୀବନବୀମା କମ୍ପାନି ଗୋଟିଏ ମୋଳା କରି ଅଣାଇ ନାନାବିଧ ବ୍ୟବସାୟ କରି ବହୁ ଲୋକଙ୍କର ଜୀବିକା ନିର୍ବାହ ହେବା ସଙ୍ଗେ କମ୍ପାନି ଭଣ୍ଡାରରେ ବହୁ ଧନ ସଂଗ୍ରହ କରିପାରିଥିଲେ । ଏହି କମ୍ପାନି କର୍ମିବୃନ୍ଦମାନେ ଆପଣା ମଧ୍ୟରେ ଅଂଶ ସଂଗ୍ରହ କରି ଚାଲିଥିଲେ ।

କମ୍ପାନି କର୍ମିବୃନ୍ଦମାନେ ଆପଣା ମଧ୍ୟରେ ଅଂଶ ସଂଗ୍ରହ କରି ଏକ ଛାପାକଳ କିଣି ତହିଁରୁ "ଉତ୍କଳ ଜୀବନ" ନାମକ ଏକ ମାସିକ ପତ୍ର ପ୍ରକାଶ କରୁଥିଲେ । ଏହି ସମୟରେ ମୁଁ ମଧ୍ୟ ୧୦/୧୫ହଜାର ଟଙ୍କାର ମୂଳଧନ ଅଂଶ ସ୍ୱରୂପ ସଂଗ୍ରହକରି ବେଲଗୁଣ୍ଠା ବା ରସୁଲକୁଣ୍ଡାଠାରେ ଏକ ବାଣିଜ୍ୟ ସଂଘ ସ୍ଥାପନ

କରିବା ଇଚ୍ଛା କରୁଥିଲି । କିନ୍ତୁ କାଳର କୁଟିଳ ଗତି । ଅନ୍ତିମରେ କମ୍ପାନିରେ ସର୍ବନାଶ ହୁଏ, ପୂର୍ବପୁଞ୍ଜି ସୁଦ୍ଧା ନଷ୍ଟ ହୁଏ । ଏହି କମ୍ପାନିର ଅଧ୍ୟକ୍ଷ ଓ କର୍ମଚାରୀମାନେ ଲକ୍ଷାଂଶ ବାହାରେ ଲୋକଙ୍କର ଧନ ଆତ୍ମସାତ୍ କଲେ । ହିସାବ ପତ୍ରରେ ହେରଫେର କଲେ । କମ୍ପାନୀ ଦୁଆଳିଆ ହୋଇଗଲା । କମ୍ପାନୀ ଚୁକ୍ତି ଏବେ ସମସ୍ତେ ଖଣ୍ଡ୍‌ଗତସ୍ତ । କମ୍ପାନିର ନାମ ଚତୁର୍ଦ୍ଦିଗରେ ବଦନାମ ହେଲା । କମ୍ପାନି ବା ସଂଘପ୍ରତି ଲୋକଙ୍କର ଆଉ ବିଶ୍ୱାସ ରହିଲା ନାହିଁ । ବିଶ୍ୱାସ ଅଟେ ସକଳ ବ୍ୟବସାୟର ମୂଳ । ବିଶ୍ୱାସ ହରାଇଲେ ଆଉ କୌଣସି ବ୍ୟବସାୟ ଚଳିପାରେ ନାହିଁ ।

ଆଉ ଏକ ଘଟଣା— ମୁଁ ବ୍ରହ୍ମପୁର ସବ୍‌ରେଜିଷ୍ଟ୍ରାର ଥିଲାବେଳେ ବଡ଼ ଖେମୁଣ୍ଡି ରାଜା ଶ୍ରୀ କୃପାମୟ ଦେବ ଗଜପତି ମହାରାଜ ତାହାଙ୍କର କୌଣସି ଏକ ବଙ୍ଗଳା ବନ୍ଧକ କରିଦେବା ନିମନ୍ତେ ରେଜେଷ୍ଟ୍ରି ଅଫିସକୁ ଆସିଥିଲେ । ଦସ୍ତାବିଜକାରୀ ଯଦି ରେଜିଷ୍ଟ୍ରି ହାକିମଙ୍କର ଅପରିଚିତ ଥିବେ ତେବେ ତାହାଙ୍କର ଟିପ ଚିହ୍ନ ରଖିବା ନିୟମ । ଉକ୍ତ ନିୟମାନୁସାରେ ଟିପ ଚିହ୍ନ ଦେବା ପାଇଁ ମୁଁ ରାଜା ସାହେବଙ୍କୁ ଅନୁରୋଧ କଲି । ରାଜା ହୋଇ ଟିପ ଚିହ୍ନ ଦେବା ତାହାଙ୍କୁ ଅପମାନ ବୋଧ ହେଲା । ସେ ରାଜା ହୋଇଥିଲେ ମଧ୍ଯ ମୋର ପ୍ରତ୍ୟକ୍ଷ ପରିଚିତ ନଥିବା ଯୋଗୁଁ ତାହାଙ୍କୁ ଟିପଚିହ୍ନ ଦେବାକୁ ପଡ଼ିବ ବୋଲି କହିବାରୁ ରାଜା ମହୋଦୟ ମୋ ଉପରେ ଅତ୍ୟନ୍ତ ରାଗାନ୍ୱିତ ହୋଇ ଉଠିଲେ । କିନ୍ତୁ ଅଗତ୍ୟା ବାଧ୍ୟ ହୋଇ ଟିପଚିହ୍ନ ଦେଇଗଲେ ।

ଏହି ଘଟଣାରୁ ମୋ ଉପରେ କ୍ରୋଧାନ୍ୱିତ ହୋଇ ମୂର୍ଖ ମନ୍ତ୍ରୀ ମାନଙ୍କ କୁମନ୍ତ୍ରଣାରେ ପଡ଼ି ନାନାବିଧ ମିଥ୍ୟା କଥା ଲେଖି ମୋ ବିରୁଦ୍ଧରେ ରେଜିଷ୍ଟ୍ରି ବିଭାଗୀୟ ଇନସପେକ୍ଟର ଜେନେରାଲ ସାହେବଙ୍କୁ ରିପୋର୍ଟ ଦେଲେ । ଇନ୍‌ସ୍‌ପେକ୍‌ଟର ଜେନେରାଲ ମୋର କୈଫିୟତ ନେଇ ଏହି ନିଷ୍ପତ୍ତି କଲେ ଯେ— "ସବ୍-ରେଜିଷ୍ଟ୍ରାରଙ୍କ ନିୟମ ପାଳନ ସଙ୍ଗେ ସଙ୍ଗେ କିଛି କୌଶଳ ଅବଲମ୍ବନ କରିବା କଥା ଥିଲା । ଏହି ଘଟଣାରୁ ଏଣିକି ଚେତନା ଲାଭ କରିବେ ।" ସେହି ଦିନାବଧି ରାଜା ସାହେବ ମୋ ପ୍ରତି ସର୍ବଦା କ୍ରୋଧାନ୍ୱିତ ଏବଂ ବିଦ୍ୱେଷ୍ଟ ଥିଲେ ବୋଲି ମୁଁ ଶୁଣୁଥିଲି । କିନ୍ତୁ ତାଙ୍କ ସହ ଆଉ ସାକ୍ଷାତ ଘଟିନଥିଲା । ସେହିବେଳେ ରାଜା ଓ ରେଜିଷ୍ଟ୍ରାର ବୋଲି ଗୁଜବ ଖବର କାଗଜରେ ଏହି କଥାଟା ବିସ୍ତୃତ ହୋଇ ପଡ଼ିଥିଲା ଓ ଏହା ଅନେକ ଲୋକ ଜାଣିପାରି ଥିଲେ । ଏବେ ମୋର ବଡ଼ଖେମୁଣ୍ଡି ସ୍ଥାନାନ୍ତର ଦେଖି କେହି କେହି ବନ୍ଧୁ ମୋତେ କହୁଥାନ୍ତି ଯେ ସେ ରାଜାତ ତୁମର ବିରୋଧୀ ତୁମେ ତାହାଙ୍କର ରାଜଧାନୀରେ ରହି କିପରି କାମ କରିପାରିବ । କିନ୍ତୁ ମୁଁ ବଡ଼ଖେମୁଣ୍ଡି ଯାଇ ଦେଖିଲି ଯେ ରାଜାଙ୍କର ମୋ ପ୍ରତି ଥିବା ମତାନ୍ତର କେଉଁଦିନୁ ଅପସାରିତ ହୋଇଯାଇଲଣି । ଏଥି ପୂର୍ବରୁ ମନୋମାଳିନ୍ୟ ଯାଇ ମନୋ-ମିଳନ ଆସିଯାଇଲାଣି । ରାଜା ମହୋଦୟ ଅତ୍ୟନ୍ତ କ୍ଷମାଶୀଳ । କୌଣସି ରାଗ ଚିରକାଳ ମନରେ ରଖି ନଥାନ୍ତି । ରାଜାଙ୍କ ଅନେକ ଶୁଭାଶୁଭ ଅନୁଷ୍ଠାନରେ ମୁଁ ଯୋଗ ଦେଇଥାଏ । ପୁଣି ଅନେକ ଗୁଡ଼ାଏ ସାଧାରଣ ହିତକର କାର୍ଯ୍ୟଭାର ଗ୍ରହଣ କରିଥାଏ ।

ସମ୍ରାଟ ସପ୍ତମ ଏଡ଼ୱାର୍ଡଙ୍କ ରାଜତ୍ୱର ସ୍ମାରକ ସ୍ୱରୂପ । 'ଏଡ଼ୱାର୍ଡର ମିଳନ ମନ୍ଦିର' ନାମକ ଏକ ଗୃହ ନିର୍ମାଣ ସଙ୍କାଶେ ଗୃହା ସଂଗ୍ରହ ଓ ଗୃହ ନିର୍ମାଣ ଭାର ମୋ ପ୍ରତି ଅର୍ପିତ ହେଲା । ମୋତେ ଅନେକ ବାଧାବିଘ୍ନ ଅତିକ୍ରମ କରି ସେହି ଗୃହ ନିର୍ମାଣ କରାଇବାକୁ ପଡ଼ିଥିଲା । ଜିଲ୍ଲା କଲେକ୍ଟର ପାର୍ଶିଭାଲ୍ ସାହେବ ଏହି ଟାଉନ ହଲ ବା ମିଳନ ମନ୍ଦିରରେ ଦ୍ୱାରୋଦ୍‌ଘାଟନ ପ୍ରତିଷ୍ଠା କରିଥିଲେ । ଗ୍ରାମ ସଂସ୍କାର ବିଦ୍ୟାଳୟ ସ୍ଥାପନ, ସ୍ୱାସ୍ଥ୍ୟୋନ୍ନତି ସାଧନ, ଧର୍ମଶାଳା, ପାନ୍ଥଶାଳା ଓ ରାଜପଥ ନିର୍ମାଣ ଇତ୍ୟାଦି ବିଷୟରେ ମୁଁ ରାଜାଙ୍କ ନିକଟରେ ଅନେକ ସମୟରେ ଅନେକ ପ୍ରସ୍ତାବ ଦେଉଥାଏ । ତହିଁରୁ କେତେଟା ମୋ ସମୟରେ କାର୍ଯ୍ୟରେ ପରିଣତ ହୋଇଥିଲା । ରାଜନଗର ପ୍ରାଚୀରଠାରୁ ଏଡ଼ୱାର୍ଡ ଟାଉନହଲ ପର୍ଯ୍ୟନ୍ତ ପ୍ରାୟ ଦୁଇ ଫର୍ଲଙ୍ଗ ପକ୍କା ସଡ଼କ ରାସ୍ତା ନିର୍ମିତ ହୋଇ ଏହି ସଡ଼କ ଷ୍ଟ୍ରିକ ମେଗ୍ରି ରୋଡ଼ ନାମରେ ଅଭିହିତ ହୋଇଥିଲା । ବାଳିକା ସ୍କୁଲଟି ଅତି କ୍ଷୁଦ୍ର ଏବଂ ସଙ୍କୀର୍ଣ୍ଣ ଥିଲା । ଏହାକୁ ବିସ୍ତୃତ ଓ ପ୍ରଶସ୍ତ କରି ଦିଆଗଲା । ଉପଯୁକ୍ତ ଶିକ୍ଷକ ନିଯୋଗ ଓ ସୁଶୃଙ୍ଖଳିତ କାର୍ଯ୍ୟର ବ୍ୟବସ୍ଥା କରି ଦିଆଗଲା । ଛାତ୍ରବୃତ୍ତି ଫଣ୍ଡ ସ୍ଥାପନ କରାଗଲା । ନର୍ଥ ସେଟଲମେଣ୍ଟ ସ୍କୁଲ ଗୃହ ନିର୍ମାଣରେ ସୂତ୍ରପାତ ହେଲା ।

ଦେଶୋନ୍ନତି ଦାୟିନୀ ଛାତ୍ର ସମ୍ମିଳନୀ, ଗ୍ରାମ ସଂସ୍କାର କମିଟି ଇତ୍ୟାଦି ବିବିଧ କାର୍ଯ୍ୟ ଅନୁଷ୍ଠିତ ହେଲା । ସେଟଲମେଣ୍ଟ ସ୍କୁଲ ପରିଚାଳନା ଭାର ମୋ ପ୍ରତି ଅର୍ପିତ ହେଲା ଏବଂ ସମ୍ପାଦକ ମଣିମଣି ବାବୁଙ୍କ ସ୍ଥାନରେ ମୋତେ ଛାତ୍ରବୃତ୍ତି ଫଣ୍ଡର ସମ୍ପାଦକ

ହେବାକୁ ପଡ଼ିଲା । ଏହିପରି ଏହି ରାଜଧାନୀରେ ଅନେକ ପ୍ରକାର ସର୍ବସାଧାରଣ ଉପଯୋଗୀ ଲୋକହିତକର କାର୍ଯ୍ୟରେ ମୋତେ ସର୍ବଦା ବ୍ୟସ୍ତ ରହିବାକୁ ପଡ଼ୁଥିଲା । ଅନେକ ବାଧାବିଘ୍ନ, ଯାତନା, ଲାଞ୍ଛନା, ସହ୍ୟକରି ରାଜ୍ୟ ସରକାରଙ୍କୁ ବୁଝାଇ ସୁଝାଇ, ପ୍ରବର୍ତ୍ତାଇ କିଛି କିଛି କାର୍ଯ୍ୟ ସାଧନ କରି ନେବାକୁ ପଡ଼ୁଥିଲା । ରାଜଧାନୀ ମାନଙ୍କରେ ମନ୍ତ୍ରୀ ପରିଷଦ ପୁଣି ଗୌଡ଼ ଭଣ୍ଡାରୀ ଆଦି ପ୍ରିୟପାତ୍ର ପାରିଷଦଠାରୁ ପାଚିଲିଆ ପର୍ଯ୍ୟନ୍ତ ମଧ୍ୟବର୍ତ୍ତୀ ଲୋକଙ୍କର କୁମନ୍ତ୍ରଣା ଓ ଷଡ଼ଯନ୍ତ୍ର ସବୁ ଅତିକ୍ରମ କରି ଗ୍ରାମ୍ୟରେ ପ୍ରବେଶ କରିବାକୁ ହୁଏ । ଥରେ ରାଜା ମହୋଦୟ ମତେ ସ୍ୱର୍ଣ୍ଣ ଶୃଙ୍ଖଳ ଓ ପଦକ ଦେବାକୁ ଇଚ୍ଛା କଲେ । ମୁଁ ନାସ୍ତି କଲାରୁ ମୋ ପ୍ରତି କ୍ରୋଧାନ୍ୱିତ ହେଲେ । ସରକାରୀ କର୍ମଚାରୀମାନେ ଏପରି କୌଣସି ପୁରସ୍କାର ଗ୍ରହଣ କରିପାରନ୍ତି ନାହିଁ, ବୋଲି ତାହାଙ୍କୁ ଅନେକ ପ୍ରକାର ପ୍ରବୋଧିବାକୁ ହେଲା । ଏହି ପୁରସ୍କାରର କାରଣ ଜିଜ୍ଞାସା କରିବାରୁ ରାଜା କହିଥିଲେ ଯେ ବଧବାର ପୁନର୍ବାର ନିଯୋଗ ପ୍ରୟାସୀ ଥିବା ଯୋଗୁଁ ମୋତେ ସେ ଉକ୍ତ ପୁରସ୍କାର ଦେଉଥିଲେ । କିନ୍ତୁ କେବଳ ମୋର ମନବୋଧ କରିବା ନିମନ୍ତେ ମୋତେ ରାଜା ସାହେବ ଏହି କାରଣ ପ୍ରଦର୍ଶାଇ ଥିଲେ । ମୁଁ ଜାଣେ ଯେ ଗଜପତି ମହାରାଜ ଅତି ରକ୍ଷଣଶୀଳ । ସେତେବେଳେ ବାଚସ୍ପତି ପ୍ରଭୃତି ପଣ୍ଡିତମାନେ ସତର୍କ ହୋଇ ରାଜାଙ୍କର ଭ୍ରମ ସଂଶୋଧନ ପାଇଁ ଚେଷ୍ଟା କରିଥିଲେ । ମୁଁ ପଦକ ଗ୍ରହଣ ନ କରିବାକୁ ପଣ୍ଡିତ ମାନଙ୍କର ପ୍ରେରଣାରେ ଅନ୍ୟ କୌଶଳ

ଅବଲମ୍ବନ କରିଲେ । ଏକ ସଭାରେ ଆୟୋଜନ ହେଲା । ତହିଁରେ ଯୁବଷ୍ଟ ବିବାହର ଯଥାର୍ଥତା ସମ୍ବନ୍ଧରେ ଲେଖକମାନଙ୍କ ପ୍ରବନ୍ଧ ପଠିତ ହେଲା । ମୋର ପ୍ରବନ୍ଧ ସକାଶେ ମୋତେ ଉକ୍ତ ପଦକ ପ୍ରଦତ୍ତ ହେଲା । ଏହି ଘଟଣା ସବୁ ଲେଖି ପଦକ ଗ୍ରହଣ କରିଯାଇପାରେ କି ନା ଏ ବିଷୟରେ ବିଭାଗୀୟ କର୍ତ୍ତୃପକ୍ଷଙ୍କ ମତ ଜିଜ୍ଞାସା କଲି । ଅନେକ ଲେଖାଲେଖି କୈଫିୟତ ପରେ ମୁଁ ଉକ୍ତ ସ୍ୱର୍ଣ୍ଣପଦକ ଗ୍ରହଣ କରିପାରେ ବୋଲି ଆଦେଶ ହେଲା । ରାଜା ମହୋଦୟ ମନେ ଏଣେ ପୁରସ୍କାର ଦିଅନ୍ତି, ଏବଂ କଣ୍ଠୁ ଲଞ୍ଚ ବା ପାରିତୋଷିକ ଇଚ୍ଛା କରିଥିଲେ ହଜାର ହଜାର ଟଙ୍କା ଦେଇ ପାରିଥାନ୍ତେ । କିନ୍ତୁ ପ୍ରତିଶ୍ରୁତ ଗ୍ରାସବୃତ୍ତି ଟଙ୍କା, ଶିକ୍ଷକର ମାସିକ ବେତନ କିମ୍ବା ପ୍ରାରବ୍ଧ କୌଣସି କାର୍ଯ୍ୟରେ ବ୍ୟୟ ବାବଦ ଟଙ୍କା ଯଥା ସମୟରେ ଦିଅନ୍ତି ନାହିଁ । ଅତ୍ୟନ୍ତ ଅଶ୍ରଦ୍ଧା ଓ ଅବହେଳା କରିଥାନ୍ତି । ଏଥିପାଇଁ ଅନେକ ସମୟରେ ମନୋବେଦନା ଏବଂ ମାନହାନି ଭୋଗ କରିବାକୁ ପଡ଼ିଥାଏ ।

ମୋର ରେଜେଷ୍ଟ୍ରି କାର୍ଯ୍ୟ ବିଭାଗର ପ୍ରତ୍ୟେକ ଷ୍ଟେସନରେ ମୁଁ ସାଧାରଣତଃ ଭୋଗବିଳାସୀ ରାଜା ଜମିଦାରଙ୍କ ଦସ୍ତାବିଜ ପଞ୍ଜ ଟେକ୍ସକୁ ରଖି ଗରିବ ପ୍ରଜା ସାଧାରଣଙ୍କ ବିଷୟ ଆଗ ବୁଝିଥାଏ । ଏଥିପାଇଁ ଏହି ଗଜପତି ମହାରାଜ ମୋ ପ୍ରତି ଅନେକ ସମୟରେ ଅତ୍ୟନ୍ତ ବିରକ୍ତ ହୋଇଥାନ୍ତି । ସ୍ୱାର୍ଥପର ପରିଷଦ ମାନଙ୍କ କଥାରେ ପଡ଼ି ଉପର ଅଧିକାରୀମାନଙ୍କ ନିକ-

ଟକୁ ମୋ ବଡ଼ଭାଇ ଲେଖି ମୋର ସ୍ଥାନାନ୍ତର କରାଇବା ଚେଷ୍ଟା କରୁଥାନ୍ତି । ପୁଣି ଅପର ମୁହୂର୍ତ୍ତରେ ସଭାସମିତ ବଡ଼ାଇ ଭଙ୍ଗିରେ ମୋର ପ୍ରଶଂସା କରୁଥାନ୍ତି । ଅଜ୍ୟବସ୍ଥିତଚିତ୍ତ ଲୋକର ପ୍ରସାଦ ମଧ୍ୟ ଭୟଙ୍କର ବୋଲି କଥା ଅଛି । ମୋଟା ମୋଟି ଦେଖିବାକୁ ଗଲେ ରାଜା ମହୋଦୟଙ୍କର ମୋ ପ୍ରତି ଆନ୍ତରିକ ସ୍ନେହ ଭକ୍ତି ଏବଂ ଗୌରବ ଥାଏ । ତଥାପି ଏଣ୍ଣ ଷ୍ଟେସନରୁ ସ୍ଥାନାନ୍ତର ହେବାପାଇଁ ମୁଁ ଅନେକ ବାର ଦରଖାସ୍ତ ଦେଇଥିଲି ।

ପରିଶେଷରେ ୧୯୧୩ ସାଲରେ ମୋର ଆସିକା ସ୍ଥାନାନ୍ତର ହୁକୁମ ହେଲା । ସେତେବେଳେ ମୋର ଆନନ୍ଦର ସୀମା ରହିଲା ନାହିଁ । କିନ୍ତୁ ଯେ କୌଣସି ସ୍ଥାନ ହେଉ, ବ୍ୟକ୍ତି ବା ବସ୍ତୁ ବିଶେଷ ହେଉ ଚିର ସହବାସରୁ ତାହାପ୍ରତି ଆସକ୍ତି ଜନ୍ମେ । ଏହି ରାଜଧାନୀ ଓ ରାଜପରିଷଦ ମାନଙ୍କର ସମସ୍ତ ସମ୍ବନ୍ଧ, ଧର୍ମର୍କ ଛାଡ଼ିବାଇ ପୁଣି ସ୍ୱପ୍ନରଚିତ ଅନେକ ଗୁଡ଼ିଏ ପ୍ରତିଷ୍ଠାନକୁ ଶୈଶ-ବାବସ୍ଥାରେ ଛାଡ଼ିଯିବା କଥା ମନେହେଲେ ମନଟା ବ୍ୟାକୁଳିତ ହୁଏ । ମୋହର ସ୍ଥାନାନ୍ତର କଥା ୧୫।୨୦ ଦିନ ପର୍ଯ୍ୟନ୍ତ କାହାକୁ ଘ କହି ରହିଲି । "ଫୁଟିଲି ଫୁଲ ଜଗତେ ବାସେ ।" କଥାଟା ଚହଳ ହୋଇଗଲା । ଅନେକ ଲୋକ ମୋ ପ୍ରତି ଅନେକ ଆଶା କରିଥିଲେ । ଏବେ ନିରାଶ ହେଲେ । ନାନା ଲୋକଙ୍କୁ ନାନା ପ୍ରକାର ଛଳନା ବା କୌଶଳରେ ପ୍ରବୋଧିବାକୁ ହେଲା । ମୋର ସ୍ଥାନାନ୍ତରରେ ରାଜା ସାହେବ ମଧ୍ୟ ଦୁଃଖିତ ହେଲେ । ମୋର

ବିଦାୟ ଉପଲକ୍ଷରେ ଏକ ସଭାରେ ଆୟୋଜନ କରି ତହିଁରେ ମତେ କିଛି ସମୁଚିତ ବିଦାଙ୍କି ଦେବାକୁ ଚେଷ୍ଟା କରୁଥିଲେ । ବିଦ୍ୟାଳୟ, ଗ୍ରନ୍ଥାଗାର, ଛାତ୍ରବୃତ୍ତି ଫଣ୍ଡ, ଟାଉନହଲ, ଗ୍ରାମସଂସ୍କାର ଇତ୍ୟାଦିର ପରିକଳ୍ପନା ସମ୍ବନ୍ଧରେ ରାଜା ମହୋଦୟ ଆପଣାର ପ୍ରତିଜ୍ଞା ଓ ମୋର ଅନୁରୋଧ ପ୍ରତି ଅନେକ ସମୟରେ ନିତାନ୍ତ ଅବହେଳା ପ୍ରଦର୍ଶନ କରିଥିବା ହେତୁ ଏହି ସ୍ଥାନ ତ୍ୟାଗ କରିବା ମୋର କର୍ତ୍ତବ୍ୟ । ପେଉଟେଜିଲକୁ ରାଜାଙ୍କୁ କହିଲି ଯେ ଯଦି ବିଦାୟ ବିଡମ୍ବନା ପେନ କୌଣସି ଆଡମ୍ବର ଆୟୋଜନ କରାଯାଏ ତେବେ ମୁଁ ଏହିକ୍ଷଣି ବାହାରି ଯିବି । ତା ନ ହେଲେ ମୁଁ ଏଠାରେ ଦୁଇ ସପ୍ତାହ ରହି ସମସ୍ତଙ୍କ ସ୍ନେହ ସମ୍ଭାଷଣ ସୁଖ ଅନୁଭବ କରିଯିବି । ମୋର ଏହି ଅଭିମତ ଶୁଣି ରାଜା କୌଣସି ବିଦାଙ୍କି ଯୋଗାଡ଼ କଲେ ନାହିଁ ।

ଦଗପଦଣ୍ଡି ଗଡ଼ରେ ମୋଟ ପ୍ରାୟ ଚାରି ବର୍ଷକାଳ ଅବସ୍ଥାନ କରିବାକୁ ପଡ଼ିଥିଲା । ଏହି ଚାରିବର୍ଷକାଳ ମଧ୍ୟରେ ଭଲମନ୍ଦ, ସୁଖ ଦୁଃଖ ସାରସାର କେତେଦିନ କେତେ ପ୍ରକାରର ଘଟଣା ଅନେକ ଲାଗିଅଛି । ତା ସବୁ ଏବେ ମନେ ଭାବି ଲେଖି ବସିଲେ ଗୋଟିଏ ବଡ଼ ପୁସ୍ତକ ହେବ, ତେଣୁ ତହିଁରୁ କ୍ଷାନ୍ତ ହେଲି । ଦଗପଦଣ୍ଡି ଷ୍ଟେସନକୁ ଚାଲିବାବେଳେ ମୋର ବେତନ ଥିଲା ମାସିକ ନବେ ଟଙ୍କା । ଏହିସ୍ଥାନରେ ଆଉ ଦଶଟଙ୍କା ମାତ୍ର ପ୍ରମୋସନ ପାଇଥିଲି । ଏହି ବେତନ ବୃଦ୍ଧି ହେବା ଦିନ ମୋର ଗୁମାସ୍ତା ମାନଙ୍କୁ ଗୋଟିଏ ଲେଖାଏଁ ଓ୍ୱାଚ୍ ବା ଘଡ଼ି ଦେଇଥିଲି ।

ମୁଁ ଯାହା ଆଦାୟ କରେ ମୋ ସ୍ତ୍ରୀ ହାତରେ ଦେଇଦିଏ । ବଡଖେମଣ୍ଡି ରାଜାଙ୍କଠାରୁ ଏକଶତ ଟଙ୍କାର ସ୍ୱର୍ଣ୍ଣ ଶୃଙ୍ଖଳ ଓ ପଦକ ମଧ୍ୟ ମୋ ସ୍ତ୍ରୀ ହସ୍ତରେ ଦେଇ ପକାଇଥିଲି । ଏ ଶୃଙ୍ଖଳଟା ଧରିବାକୁ ମୋତେ ଲଜ୍ଜା ବୋଧ ହୁଏ । ମୋ ସ୍ତ୍ରୀ ହିଁ ଖର୍ଚ୍ଚପତ୍ର ଚଳାନ୍ତି । ମୁଁ କେବେହେଲେ ଟଙ୍କା ତଙ୍କ ନିଜ ହାତରେ ରଖି ନିଜେ ଖର୍ଚ୍ଚ କରି ଜାଣେ ନାହିଁ । ମୋ ହାତରେ ଆୟ ଅପେକ୍ଷା ବ୍ୟୟ ହରଟା ଟିକିଏ ବେଶୀ ହୋଇ ପଡ଼ିଥାଏ । ମୋର ସ୍ତ୍ରୀ ପାଖରେ ନଥିଲା ବେଳେ ଘରର ନୌକର ହାତେ ମୁଁ ମୋର ପେଣ୍ଡି ସିନ୍ଦୁକ ଗୃହ ଦେଇ ଦେଇଥାଏ । ସେ ଖର୍ଚ୍ଚପତ୍ର ଚଳାଇ ମୋତେ ଯେଉଁ ହିସାବ ବୁଝାଇ ଦିଅନ୍ତି ତାହା ମୁଁ ଅଗତ୍ୟା ସ୍ୱୀକାର କରିଥାଏ । ଏଣେ ଆମଘରର ବ୍ୟବହାର ବୁଝିବା ପାଇଁ ମୋର ପ୍ରିୟ ଏବଂ ବିଶ୍ୱାସ ପାତ୍ର କୃଷ୍ଣଚନ୍ଦ୍ରଙ୍କୁ ନିଯୁକ୍ତ କରିଥାଏ । ଏହାଙ୍କର ହିସାବପତ୍ର ଲେଖାତଜ ଦେଖିବାକୁ ମଧ୍ୟ ମୋର ଅବହେଳା । ଅନେକ ସମୟରେ ଏହାଙ୍କର ମଧ୍ୟ ତ୍ରୁଟି ଅପଥା ଲୋଭ ଓ ଦ୍ରୋହାଚରଣ ଦେଖିଥାଏ । ତଥାପି ଏହାଙ୍କୁ କାର୍ଯ୍ୟରୁ ଅନ୍ତର କରି ନଥାଏ । ଯଦି କାହିଁକିନ ଏହାଙ୍କ ପ୍ରତି ବିମନା ହୋଇ ଏହାଙ୍କୁ ଅନ୍ତର କରି ଅନ୍ୟ ଲୋକଙ୍କୁ ନିଯୁକ୍ତ କରିଥାଏ, ସେହି ଲୋକ ମୋତ୍ରତି ଅଧିକ ଦ୍ରୋହାଚରଣ କରିଥିବା ଏବଂ ମୋର କ୍ଷତି କରିଥିବା ଦେଖାଯାଏ । ଜଗତର ସବୁକଥା ଏହିପରି— "କିଏ ସାତ କିଏ ସତର; କିଏ ନିଦା, କିଏ ପଥର" ଟେଙ୍ଗାଧର ଗ୍ରାମ ନିବାସୀ କଇଦାସ ନାମକ ଜଣେ ବ୍ୟକ୍ତି କହିଥିଲେ

ଗୁମାସ୍ତା ନିଯୁକ୍ତ କରି କ୍ଷତିଗ୍ରସ୍ତ ହୋଇଥିଲି । ଶେଷରେ ପୁଣି ସେହି କୃଷ୍ଣ ପଣ୍ଡାଙ୍କୁ ଗୁହାଦାର, ଗୁମାସ୍ତା, ରକ୍ଷକ ଓ ବନ୍ଧୁସ୍ଥ ରୂପରେ ରୂପେ ନିଯୁକ୍ତ କଲି ।

ମୋର ପରିବାର ମଧ୍ୟରେ କେବଳ ତିନିଜଣ ମାତ୍ର । ମୁଁ ମୋହର ସ୍ତ୍ରୀ ଏବଂ ଏକମାତ୍ର ସନ୍ତାନ ମାଳତୀ ନାମ୍ନୀ କନ୍ୟା । ପନ୍ଦର ବର୍ଷଠାରୁ ପଚିଶ ବର୍ଷ ବୟସ ପର୍ଯ୍ୟନ୍ତ ମୋତେ ପାଠପଢ଼ା ଲାଗି ବିଦେଶରେ ରହିବାକୁ ହେଉଥିଲା । ପୁଣି ପଚିଶଠାରୁ ପ୍ରାୟ ପ୍ରାୟ ଚଉରିଶ ବର୍ଷ ପର୍ଯ୍ୟନ୍ତ ସରକାରୀ କାର୍ଯ୍ୟରେ ନାନା ସ୍ଥାନରେ ରହିବାକୁ ପଡ଼ୁଥିଲା । ତଥାପି ନିଜ ଗ୍ରାମରେ ପୁଣି ଛତାବର ଓ ରସୁଲକୁଣ୍ଡାଠାରେ ନୂତନ ପକ୍କା ଗୃହ ନିର୍ମାଣରେ ମୁଁ ଅନେକ ଧନ ବ୍ୟୟ କରି ପକାଇଅଛି । ଶୁଦ୍ଧ ଶ୍ରାଦ୍ଧରେ, ତୀର୍ଥ ଭ୍ରମଣରେ ଏବଂ ନୂତନ ଗୃହ ନିର୍ମାଣରେ ପୈତୃକ ସମ୍ପତ୍ତି ଅର୍ଥାତ୍ ଜମିବାଡ଼ିରୁ ଉତ୍ପନ୍ନ ହେବା ଧନର ଅଧିକାଂଶ ବ୍ୟୟ ହୋଇ ଯାଇଥିଲା । ପୁରୁଷୋତ୍ତମପୁର ଠାରେ ଥିବାବେଳେ ଛଅମାସ ଛୁଟି ନେଇ ପ୍ରୟାଗ ଆଦି ନାନା ତୀର୍ଥ ଭ୍ରମଣ କରିଥିଲି । ଏହି ସମୟରେ ଛତାବର ଠାରେ ପକ୍କା ଗୃହ ନିର୍ମାଣ କରାଇବାକୁ ପଡ଼ିଥିଲା ଏଥିରେ ପ୍ରାୟ ଦୁଇ ହଜାର ପର୍ଯ୍ୟନ୍ତ ଟଙ୍କା ଖର୍ଚ୍ଚ ହୋଇ ଯାଇଥିଲା । ଭଗବତୀପୁର ଠାରେ ଥିଲାବେଳେ ରସୁଲକୁଣ୍ଡା ଘର ମରାମତି ଓ ନୂତନ ଘର ତିଆରିରେ ପ୍ରାୟ ଅଢ଼େଇ ହଜାର ଟଙ୍କା ଖର୍ଚ୍ଚ ହୋଇଥିଲା ।

ମୋର ସ୍ତ୍ରୀ ଆସିବାର ପ୍ରାୟ ଛଅ ବର୍ଷ ପର୍ଯ୍ୟନ୍ତ ଆମର କୌଣସି ସନ୍ତାନ ହୋଇ ନଥିଲା । ପ୍ରଥମ ଗର୍ଭରେ ଏକ କନ୍ୟା ଜାତ ହେଲା । ତାହାର ନାମ ମାଳତୀ । ଏହି କନ୍ୟା ପରେ ଆଉ ଏକ କନ୍ୟା ଓ ତାପରେ ଏକ ପୁତ୍ର ଜାତ ହେଲା । କିନ୍ତୁ ଶେଷ ଦୁଇଟି ସନ୍ତାନ ଶୈଶବାବସ୍ଥାରୁ ମୃତ ହୋଇଗଲେ । ସେହି ଦିନାବଧି ଅନ୍ୟ କୌଣସି ସନ୍ତାନ ନାହିଁ । ୧୯୧୧ ସାଲରେ ମାଳତୀ ନାମ୍ନୀ ଏକମାତ୍ର କନ୍ୟାର ବିବାହ ହେଲା ନିକଟବର୍ତ୍ତୀ ଇଙ୍ଗିଡ଼ାଠ ଗ୍ରାମରେ । ମୋର ଇଚ୍ଛା ବିରୁଦ୍ଧରେ ଏହି ବିବାହ ନିର୍ବନ୍ଧ ହୋଇଗଲା । ଦୂର ଦେଶରୁ ଅର୍ଥାତ୍ ଜିଲ୍ଲାନ୍ତରରୁ ଅନ୍ୟ କୌଣସି ଶ୍ରେଣୀ ବ୍ରାହ୍ମଣ ଘରେ ଏହି ବିବାହ ସମ୍ବନ୍ଧ ସ୍ଥାପନ କରିବାକୁ ମୁଁ ଅନେକ ଚେଷ୍ଟା କଲି । ସବୁ ବିଫଳ ହେଲା ମୋ ସ୍ତ୍ରୀ ଆପତ୍ତି କଲେ, ପୁଣି ଅନ୍ୟାନ୍ୟ ଶିକ୍ଷିତ ବନ୍ଧୁମାନେ ମଧ୍ୟ ମୋହର ଏହି ପ୍ରସ୍ତାବରେ ସମ୍ମତ ହେଲେ ନାହିଁ । ଏହି ବିବାହକୁ ଲୋକମାନେ କହନ୍ତି ପ୍ରଜାପତି ଘଟଣା, ଅର୍ଥାତ ଯାହା ହବାର ଥାଏ ତାହା ହୋଇଯାଏ । ତହିଁରେ ପିତା ମାତାଙ୍କର ମଧ୍ୟ କୁଛିଉ ରହିପାରେ ନାହିଁ । ମାଳତୀ ଏକମାତ୍ର ସନ୍ତାନ ଥିବାରୁ ତାହାର ବିବାହରେ ଟିକିଏ ବେଶୀ ଧନ ବ୍ୟୟ କରିବାକୁ ଇଚ୍ଛା ହେଲା । ମୋହର ସ୍ତ୍ରୀ ବ୍ୟୟ ସଂକୋଚ କରିବାକୁ ମତେ ସର୍ବଦା ଉପଦେଶ ଦିଅନ୍ତି । ସେ ମଧ୍ୟ ଆପଣାର ଏକମାତ୍ର କନ୍ୟା ବିବାହରେ ଟିକିଏ ଅତିରିକ୍ତ ଧନବ୍ୟୟ କରିବାକୁ ମତେ ପ୍ରବର୍ତ୍ତାଇ ଦେଲେ । "ଲଙ୍କାରୁ ରାଜ୍ୟ ପରେ, ଆମେ କଣ ଆଉ ପୁଅ ବୁଢ଼ ନା ଝିଅ ବଭ୍ର କରିବା

ଯେ ଏହି ଏକମାତ୍ର ବିବାହରେ ବ୍ୟୟକୁଣ୍ଠିତ ହେବ ।" ଆମ ସ୍ତ୍ରୀଙ୍କର ଏହି ପ୍ରବର୍ତ୍ତନା ମୋହ ଇଙ୍କୁ ଅଧିକତର ବଳବତୀ କରିଥିଲା । ଏହି ବିବାହରେ ବାରଶତ ଟଙ୍କା ପର୍ଯ୍ୟନ୍ତ ଖର୍ଚ୍ଚ ହୋଇ ଯାଇଥିଲା । ଆମ ଦେଶରେ, ଜାତିରେ ବା ଶ୍ରେଣୀରେ ବ୍ରତ, ବିବାହାଦି ଉତ୍ସବରେ ଏକଦିନ ଭୋଜି ଦେବାକୁ ହୁଏ । ବ୍ରାହ୍ମଣ, ଶୂଦ୍ର, ବନ୍ଧୁ, ସ୍ନେହୀ, ମିତ୍ର ବରଯାତ୍ରୀ କନ୍ୟାଯାତ୍ରୀ ସମସ୍ତଙ୍କୁ ଯେହି ବିବାହ ବା ବ୍ରତ ଏକ ଦିନରେ ଭୋଜି ଦିଆଯାଏ । ବୈଦିକ କର୍ମକାଣ୍ଡ, ଗୀତ ନୃତ୍ୟାଦି ଆମୋଦ, ବିବିଧ ଶ୍ରେଣୀର ଲୋକମାନଙ୍କର ଭୋଜନ ଏହିସବୁ ଏକାଦିନରେ ହେବାଯୋଗୁଁ କୌଣସି ସୁଖ ସ୍ୱାଚ୍ଛନ୍ଦ୍ୟ ଏବଂ ସୁବିଧା ଶୃଙ୍ଖଳା ରହିପାରେ ନାହିଁ । ଖାଦ୍ୟଜାତ ଖାଇଲା ବେଳକୁ ବିଗିଡ଼ି ଯାଉଥାଏ, କୁଅ ହୋଇଯାଇଥାଏ । ଅନେକ ଲୋକ ଅଜୀର୍ଣ୍ଣ ରୋଗରେ ପୀଡ଼ିତ ହୁଅନ୍ତି, ସମସ୍ତଙ୍କର ଯଥାବିଧି ସତ୍କାର ହୋଇପାରେ ନାହିଁ । ଏହି ପ୍ରଚଳିତ ନିୟମ ବିରୋଧରେ ୪ ଦିନ ଭୋଜନ ଦେବାକୁ ହୋଇଥିଲା । ପ୍ରଥମ ଦିନ ବରଯାତ୍ରୀ ଏବଂ ଆପଣାର ବଂଶ ଓ ବନ୍ଧୁବର୍ଗଙ୍କୁ, ଦ୍ୱିତୀୟ ଦିନ ସ୍ନେହବନ୍ଧୁ ଓ ମିତ୍ରମାନଙ୍କୁ, ତୃତୀୟ ଦିନ ଶୂଦ୍ରାଦି ଇତର ଜାତିର ଲୋକମାନଙ୍କୁ, ପୁଣି ଚତୁର୍ଥ ଦିନ ଶାସନୀ ବ୍ରାହ୍ମଣମାନଙ୍କୁ ଏହି କ୍ରମରେ ଭୋଜି ଦିଆଯାଇଥିଲା । ଏହି ବିବାହର ସ୍ମାରକ ସ୍ୱରୂପ ଦୁଇଶତ ଟଙ୍କା ବ୍ୟୟରେ ଆମଗ୍ରାମ ପୂର୍ବଦିଗ ଖରଖଗ ପାଣି ନାଳରେ ଏକ ଘାଇ ବା ବନ୍ଧ ପକାଇ ଦିଆଗଲା । ବର୍ଷାକାଳରେ ପ୍ରାୟ ୬ମାସ କାଳ ଲୋକେ ଏହି

ଖଣ୍ଡଗିରି ଭିତରେ ଆଣ୍ଠୁଏ ଜଳରେ, ଅନେକ ପାଣିରେ ପଶି ଯିବା-ଆସିବା କରନ୍ତି । ବହୁ ଅସୁବିଧା ଓ କଷ୍ଟ ଭୋଗ କରନ୍ତି । ଏହି ପାଇଁ ପଡ଼ିଯିବା ଦ୍ୱାରା ଲୋକେ ଏବେ ସୁଖ ସ୍ୱାଚ୍ଛନ୍ଦ୍ୟରେ ଏବାଟେ ଯିବା ଆସିବା କରୁଛନ୍ତି ।

୧୯୧୩ ସାଲରେ ବଗପଡ଼ଣ୍ଡି ଗଡ଼ଠାରୁ ମୋର ଆସିବା ସ୍ଥାନାନ୍ତର ହେଲା । ଋଷିକୂଲ୍ୟା ନଦୀ ତୀରବର୍ତ୍ତୀ ଆସିକା ନଗରସ୍ଥ ହେଡ୍‌ରେଜେଷ୍ଟ୍ରି ଅଫିସରେ ମତେ ଗୃହବର୍ଷ ରହିବାକୁ ପଡ଼ିଲା । ଏଠାରେ ସୁଖ ସ୍ୱାଚ୍ଛନ୍ଦ୍ୟ ସହକାରେ ଉକିଲ, ସରକାରୀ କର୍ମଚାରୀ, ପଣ୍ଡିତ, ତାଲୁକାଦାର ଓ ଜମିଦାର ଇତ୍ୟାଦି ବିବିଧ ଶ୍ରେଣୀର ଲୋକଙ୍କ ସଙ୍ଗରେ ବିବିଧ କାର୍ଯ୍ୟାନୁଷ୍ଠାନରେ ଗୃହବର୍ଷ କାଳ ଚାଲିପରି ବହିଗଲା । ଉକିଲ ହରିହର ବାବୁଙ୍କ ଯତ୍ନରେ ଏଠାରେ ଏଥି ପୂର୍ବରୁ ମ୍ୟାକ୍ ମାଇକେଲ ଆଙ୍ଗ୍ଲ ସଂସ୍କୃତ ବିଦ୍ୟାଳୟ ସ୍ଥାପିତ ହୋଇଅଛି । ଏହି ସ୍କୁଲରେ ଉକିଲ ହରିହର ବାବୁ, ବଟକୃଷ୍ଣ ବାବୁ ଏବଂ ମୋତେ ପାଳକରି ଶିକ୍ଷକତା କରିବାକୁ ପଡ଼ୁଥାଏ । ହରିହର ବାବୁ ଇଂରାଜୀ ଶିକ୍ଷାଦ୍ୱ, ବଟକୃଷ୍ଣ ବାବୁ ଗଣିତ ଏବଂ ମୁଁ ସାହିତ୍ୟ ଶିକ୍ଷା ଦେଉଥାଉଁ । ଏହି ସ୍ଥାନରେ ପ୍ରବର୍ତ୍ତିତ ଉତ୍କଳ ଛାତ୍ର ବୃତ୍ତି ପାଣ୍ଠି ପରିଚାଳନାରେ ଆମ୍ଭେମାନେ ଯୋଗ ଦେଇଥାଉଁ । ବଛାବଛି ଛାତ୍ରମାନଙ୍କୁ ବୃତ୍ତି ଦିଆ ନଯାଉ ବୋଲି ମୁଁ ବହେ ପ୍ରସ୍ତାବ କଲି । ଏହି ପ୍ରସ୍ତାବ ସଭାରେ ମଞ୍ଜୁର ହୋଇଥିଲା । ସ୍ଥାନୀୟ ଶିକ୍ଷିତ ଓଡ଼ିଆ ଲୋକମାନଙ୍କର ଏହି ସ୍କୁଲ ଗୃହରେ ପ୍ରତି

ରବିବାର ଦିନ ସଭା ହେଉଥାଏ । ଏହି ମିଳାମିଶା ବେଳେ ପ୍ରବନ୍ଧପାଠାଦି ସାହିତ୍ୟ ଚର୍ଚ୍ଚା ହେଉଥାଏ । ଏହି ସଭାରେ ଦିନେ ମୋର ପ୍ରସ୍ତାବ କ୍ରମେ ଏଠାରେ କୃଷ୍ଣ ସିଂହ ପାଠାଗାର ସ୍ଥାପନ କରିବା ସ୍ଥିର ହେଲା । ଆମ୍ଭେମାନେ ଧରାକୋଟ ଯାଇ ରାଜାଙ୍କ ନିକଟରେ ଏହି ପ୍ରସ୍ତାବ କରି ତାହାଙ୍କର ଅର୍ଥ ସାହାଯ୍ୟ ପ୍ରାର୍ଥନା କରିଥିଲୁ । ଏଥିରେ ରାଜା ମହୋଦୟ ଏକହଜାର ଟଙ୍କା ଏବଂ ଘରପାଇଁ ଲାଗିବା କାଠତକ ଦେବାକୁ ସ୍ୱୀକାର କରିଥିଲେ । ଦିନେ ମାନ୍ଦ୍ରାଜ ସରକାର ଶାସନ ସଭାର କାର୍ଯ୍ୟକାରୀ ସଭ୍ୟ ଶ୍ରୀଯୁକ୍ତ ଶିବସ୍ୱାମୀ ଆୟାର ଆସିବାକୁ ବିଜେ କରିଥିଲେ । ଏହି ସମୟରେ ସ୍ଥାନୀୟ ସବମାଜିଷ୍ଟ୍ରେଟ ବାବୁ ଘନବନ୍ଧୁ ପଣ୍ଡା ଏବଂ ମୁଁ ଧରାକୋଟ ଯାଇ ରାଜାଙ୍କୁ କହି ଏହି ସରକାରୀ ସଦସ୍ୟଙ୍କ ଦ୍ୱାରା ପ୍ରସ୍ତାବିତ ପାଠାଗାର ଶୁଭ ଦେବାର ଆୟୋଜନ କରିଥିଲୁ । ଶିବସ୍ୱାମୀ ଆୟାର ପାଠାଗାର ଗୃହନିର୍ମାଣର ଶୁଭଦେଲେ । ଗୃହ ନିର୍ମାଣ ବ୍ୟୟ ସକାଶେ ରାଜା ମହୋଦୟ ମୋ ହାତେ ଦୁଇ ଶତ ଟଙ୍କା ଦେଇଥିଲେ । ଉକ୍ତ ଟଙ୍କା ହରିବାବୁ ଜମା ରଖାଯାଇଛି । ନାନାବିଧ ପ୍ରତିବନ୍ଧକ ଯୋଗୁଁ ଏ ପର୍ଯ୍ୟନ୍ତ ଗୃହ ନିର୍ମାଣ ହୋଇପାରି ନାହିଁ । ଭବିଷ୍ୟ-ତରେ କଣ ହେବ କିଏ କହିପାରେ ? ଉକ୍ତ ଆଙ୍ଗ୍ଲ ସଂସ୍କୃତ ବିଦ୍ୟାଳୟ ବ୍ୟୟ ନିର୍ବାହ ସକାଶେ ଚାଉଳ ମୁଠିଭିକ୍ଷା ସଂଗ୍ରହର ଆୟୋଜନ କରାଯାଇଥିଲା । ମୁଁ ତାହାର ସମ୍ପାଦକ ଥିଲି । ଚାଉଳ ସଂଗ୍ରହରୁ କୋଡିଏ ପଚିଶ ଟଙ୍କା ପର୍ଯ୍ୟନ୍ତ ପ୍ରାପ୍ତ ହୋଇ-ଥିଲା । ଏହି ସ୍କୁଲ କାର୍ଯ୍ୟରେ ହରିହର ସଦସ୍ୟ କିଛି ଦିନ କାର୍ଯ୍ୟ କରିଥିଲେ । ମୁଁ କିଛି କାଳ ସକାଶେ ଛୁଟିରେ ବାହାରି ଗଲୁ

ଗୃଜନ ମୁଠି ଭିକ୍ଷା ବନ୍ଦ ହୋଇଗଲା । ଦୁଃଖର ବିଷୟ ଏହି ଯେ ଅନେକ ସ୍ୱାଧୀନଚେତା ସଙ୍ଗତିସମ୍ପନ୍ନ ଉତ୍କଳମାନେ ଏହିପରି ସତ୍କାର୍ଯ୍ୟରେ ହସ୍ତଦସ୍ତରେ ଯୋଗ ଦିଅନ୍ତି ନାହିଁ । ଏହି ସଂସ୍କୃତ ସ୍କୁଲ ପାଣ୍ଠିରେ ହରିବାବୁ କେତେକ ଭୂସମ୍ପତ୍ତି ଦାନ କରି ଅଶେଷ ଧନ୍ୟବାଦର ପାତ୍ର ହୋଇଛନ୍ତି । ଏହି ପାଣ୍ଠି ସକାଶେ ମୁଁ ତିନିଶହ ଟଙ୍କା ଦେଇଅଛି । ବଟକୃଷ୍ଣ ବାବୁ ଏହି ସ୍କୁଲର ସମ୍ପାଦକ ନିଯୁକ୍ତ ଥିଲେ ହେଁ କେବଳ ହରିବାବୁଙ୍କ ଇଚ୍ଛାନୁସାରେ ସ୍କୁଲର କାର୍ଯ୍ୟ ଏବଂ ଶିକ୍ଷକ ନିଯୋଗ ଇତ୍ୟାଦି ଚଳେ । ଆସି-ବାର ମଧ୍ୟ ସୁନାମ ବଜାର ସାହିରେ ମୁଁ ଏକ ବାଳିକା ବିଦ୍ୟାଳୟ ସ୍ଥାପନ କରି ପ୍ରାୟ ୫୦ ଟଙ୍କା ପର୍ଯ୍ୟନ୍ତ ବ୍ୟୟ କଲି । କିନ୍ତୁ ସ୍ଥାନୀୟ ଶିକ୍ଷିତ ଲୋକମାନଙ୍କର ସହାନୁଭୂତି ଓ ସହାଯ୍ୟାଭାବରୁ ପୁଣି ଅର୍ଥା-ଭାବରୁ ଉପଯୁକ୍ତ ଶିକ୍ଷା ନ ମିଳିବା ଯୋଗୁଁ କିଛି କାଳ ପରେ ଉକ୍ତ ସ୍କୁଲଟି ଉଠିଗଲା । ଗଭର୍ଣ୍ଣମେଣ୍ଟ ସ୍କୁଲ ସ୍ଥାପନ ସକାଶେ ଆମ୍ଭେମାନେ କର୍ତ୍ତୃପକ୍ଷଙ୍କ ନିକଟରେ ଆବେଦନ କରୁଥିଲୁ । ସୁଖର ବିଷୟ ଉକ୍ତ ଆବେଦନ ଫଳେ ଆଜି ଏଠାରେ ଗଭର୍ଣ୍ଣମେଣ୍ଟ ଓଡ଼ିଆ ବାଳିକା ସ୍କୁଲ ସ୍ଥାପିତ ହୋଇଅଛି । ଧରାକୋଟ ରାଜସଭା ପଣ୍ଡିତ ବାସୁଦେବ ତର୍କାଳଙ୍କାର ମନା ବା ବାସନ୍ଦ ହୋଇ ଅର୍ଥାତ୍ ରାଜ ସଭାରୁ ବିତାଡ଼ିତ ହୋଇ ଆସି ଏଠାରେ କିଛିକାଳ ଅବସ୍ଥାନ କରନ୍ତି । ଏହାଙ୍କ ପ୍ରସ୍ତାବ କ୍ରମେ ପ୍ରାଚୀନ ଓ ଆଧୁନିକ ଉଭୟ ଶ୍ରେଣୀର ପଣ୍ଡିତମାନଙ୍କୁ ନେଇ ଏକ ପଣ୍ଡିତ ସଭାର ଅଧିବେଶନ କରାଯାଇଥିଲା । ଏକମାତ୍ର

ଅଧିବେଶନ ପରେ ଆଉ ସଭା ବସିଲା ନାହିଁ । ଉଦ୍ୟୋକ୍ତାମାନଙ୍କ ଯତ୍ନ, ଉତ୍ସାହ ଓ ଅଧ୍ୟବସାୟ ଅଭାବରୁ ଏହିପରି ଅନେକ ଅନୁଷ୍ଠାନ ଅକାଳରେ ଲୋପ ହୋଇଯାଏ ।

ମୋ ଲେଖା ପଢ଼ା କଥା—ମୁଁ ବ୍ରହ୍ମପୁର ଠାରେ ମାଟ୍ରିକୁଲେସନ କ୍ଲାସର ଛାତ୍ର ଥିଲା ଦିନୁ ଖବର କାଗଜ ମାନଙ୍କରେ ନାନାବିଧ ପ୍ରବନ୍ଧ ଲେଖୁଥାଏ । ସେହିସବୁ ପ୍ରବନ୍ଧାବଳୀ କେତେ କୁଆଡ଼େ ଗଲାଣି । ଅବଶିଷ୍ଟ ଯାହାଅଛି ତାହା ପୁସ୍ତକାକାରରେ ଛାପି ଦେବା ଇଚ୍ଛା ଅଛି । କିନ୍ତୁ ସମୟ ସୁବିଧା ଓ ଅର୍ଥାଭାବରୁ ଇଚ୍ଛାଟା କାର୍ଯ୍ୟରେ ପରିଣତ ହୋଇପାରୁନାହିଁ । ଦେଖାଯାଉ ଭବିଷ୍ୟତରେ କଣ ହେବ ! ମୁଁ ପୁରୁଷୋତ୍ତମପୁରରେ ସବ୍‌ରେଜିଷ୍ଟ୍ରାର ଥିଲାବେଳେ ସେଠା ମଧ୍ୟବର୍ଗ ରଙ୍ଗାଳୟର ନୃତ୍ୟ ଗୀତ ଦେଖି ଶୁଣି ବିଧବା ବିବାହ ବିଷୟ ଉପରେ ଶଶିକଳା ପରିଣୟ ନାମକ ଏକ ନାଟକ ରଚନା କରି ଖଲିକୋଟ ମଧ୍ୟବର୍ଗ ପ୍ରେସରେ ଛପାଇ ଥିଲି । । ମୁଁ ରାଗ ରାଗିଣୀ ତାଳ କାଳ ନିର୍ଣ୍ଣୟ ଭଲ ଜାଣେନାହିଁ । ତଥାପି ମନର ଆବେଗ ସମ୍ଭାଳି ନପାରି ସମାଜ ସଂସ୍କାର କାମନାରେ କେତେଗୁଡ଼ିଏ ଗୀତ ଲେଖି ସଂସ୍କାର ସଙ୍ଗୀତାବଳୀ ନାମରେ ଖଣ୍ଡିଏ ପୁସ୍ତକ ବେଲଗୁଣ୍ଠା ପ୍ରିଣ୍ଟିଂକମ୍ପାନ ଯନ୍ତ୍ରାଳୟରେ ଛପାଇ ପ୍ରକାଶ କରିଥିଲି । ଶୃଙ୍ଗାର ରସାତ୍ମକ ଅଶ୍ଳୀଳ ଭାବପୂର୍ଣ୍ଣ ଗୀତ ଗୁଡ଼ାଏ ଲୋକେ ଗାଆନ୍ତି । ବେଶ୍ୟାମାନେ, ପିଲାମାନେ ଏକତ୍ର ଏହି ଉତ୍ତେଜକ ଗୀତ ଗାଇ ଯୁବକମାନଙ୍କୁ ଭୁଲାଇ ପଥଭ୍ରଷ୍ଟ କରିପକାନ୍ତି । ସଂସ୍କାର ସଙ୍ଗୀତାବଳୀ ଶୁଣିଲେ

ଲୋକମାନଙ୍କର ମନ ସମାଜ ସଂସ୍କାର ପ୍ରତି ଆକୃଷ୍ଟ ହେବ । ଏହି ଭାବନାରେ ସଂସ୍କାର ସଙ୍ଗୀତାବଳୀ ପୁସ୍ତକ ରଚନାକରି ପ୍ରକାଶ କରିଥିଲି । ଦିଗପହଣ୍ଡି ଗଡ଼ରେ ସବ୍‌ଇନ୍‌ସ୍ପେକ୍ଟର ଥିଲାବେଳେ ପୁରୀ ମୁକ୍ତିମଣ୍ଡପ ସଭାକୁ ଲକ୍ଷ୍ୟକରି ନିବେଦନ ନାମକ ଏକ ପଦ୍ୟ ପୁସ୍ତକ ଲେଖି ଉତ୍କଳ ସାହିତ୍ୟ ପ୍ରେସରେ ଛପାଇଥିଲି । ମୟୂରଭଞ୍ଜ ମହାରାଜ ରାମଚନ୍ଦ୍ର ଦେବ ଭଞ୍ଜଙ୍କ ନାମରେ ପୁସ୍ତକଟା ଉତ୍ସର୍ଗୀକୃତ ହୋଇଥିଲା । ଆମଘରେ ଗୋଟିଏ ଶୁଆ ଥିଲା । ସେହି ଶୁକ ପକ୍ଷୀର ବ୍ୟବହାରରେ ଶୁକପକ୍ଷୀ ନାମରେ ଏକ ପଦ୍ୟ ଲେଖିଥିଲି । ଆସିକାରେ ଦୁଇଖଣ୍ଡ ପୁସ୍ତକ ଲେଖିଥିଲି । ଖଣ୍ଡିଏ ଦସ୍ତାବିଜ ବିଷୟ, ଅନ୍ୟଟି ମିତାହାର ଓ ସ୍ୱାସ୍ଥ୍ୟରକ୍ଷା । ଗଞ୍ଜାମ ଜିଲ୍ଲାର ତେଲୁଗୁମାନେ ସରକାରୀ କର୍ମଚାରୀ କାର୍ଯ୍ୟରେ ନିଯୁକ୍ତ ଥିବାଯୋଗୁଁ ସ୍କୁଲ କଚେରୀରେ ଓଡ଼ିଆ ଭାଷାର ବ୍ୟବହାର ହୁଏ ନାହିଁ । ସକଳ ବିଷୟରେ ଓଡ଼ିଆ ଭାଷା ତେଲୁଗୁ ମିଶାହୋଇ କଦର୍ଯ୍ୟ କଦାକାର ଧାରଣ କରିଅଛି । ଗଞ୍ଜାମରେ ଓଡ଼ିଆ ଭାଷାର ଚର୍ଚ୍ଚା ସୁରକ୍ଷା ଓ ସଂସ୍କାର ଆବଶ୍ୟକ । ଦସ୍ତାବିଜ ଲେଖା ବିଷୟରେ ଓଡ଼ିଆରେ କୌଣସି ଆଦର୍ଶ ନଥିଲା । ସୁତରାଂ ଦସ୍ତାବିଜ ଲିଖନ, ଟା ଆଇନ ଓ ରେଜେଷ୍ଟ୍ରି ପ୍ରଣାଳୀ ବିଷୟ ନାମରେ ଏକ ପୁସ୍ତକ ଲେଖି ଆସିକାର କିଶୋର ଚନ୍ଦ୍ର ଭଞ୍ଜ ଛାପାଖାନାରେ ମୁଦ୍ରଣ କରାଇଲି । ସୁଖର ବିଷୟ, ଏହି ପୁସ୍ତକ ଆଦର୍ଶରେ ଗଞ୍ଜାମର କଚେରିଆ ଭାଷା କ୍ରମେ କ୍ରମେ ସଂଶୋଧିତ ହେଉଅଛି । ସ୍ଥାନୀୟ ସ୍କୁଲ ସମୂହର ସବ୍ ଆସିଷ୍ଟାଣ୍ଟ ଇନ୍‌ସ୍ପେକ୍ଟର ବାବୁ ଚନ୍ଦ୍ରମଣି ପ୍ରଧାନଙ୍କ ଅନୁରୋଧରେ ମିତାହାର ଓ ସ୍ୱାସ୍ଥ୍ୟରକ୍ଷା

ନାମକ ଏକ ପୁସ୍ତକ ବିଦ୍ୟାଳୟର ଛାତ୍ରଛାତ୍ରୀମାନଙ୍କ ଉପ-ଯୋଗାର୍ଥେ ରଚନାକରି ଡାଇରେକ୍ଟର ସାହେବଙ୍କ ମଞ୍ଜୁରି କ୍ରମେ ମ୍ୟାକ୍‌ମିଲନ ଗ୍ରନ୍ଥାଗାରରେ ମୁଦ୍ରିତ କରାଇବାକୁ ଦେଲି । ଏହାର ବିଷୟ ସ୍ୱତନ୍ତ୍ର ଲେଖି ମୁଦ୍ରିତ କରାଇବା କାଯନା ଅଛି । ପୁତ୍ରଶୋକ ଓ ଖଣ୍ଡବାଣୀ ନାମରେ ଦୁଇଖଣ୍ଡ କ୍ଷୁଦ୍ର ପଦ୍ୟ ପୁସ୍ତକ ଲେଖାହୋଇ ପ୍ରକାଶିତ ହେଲା । ମୋର କନ୍ୟା ମାଳତୀର ବିଶ୍ୱନାଥ ନାମକ ଏକ ଶିଶୁ ପୁତ୍ର ବିୟୋଗରେ ପୁତ୍ରଶୋକ ରଚିତ ହୋଇଥିଲା । ଆମ ଦେଶର ଶୂଦ୍ର ସ୍ତ୍ରୀମାନେ ପିତଳ ଝିଣ୍ଡ ଲଗାନ୍ତି । ଏହି ପିତଳ ଝିଣ୍ଡ ବାଧି ବଢ଼ିଯାଏ ଏବଂ ଅନେକ କ୍ଷତି କାରକ । ଏହି ଝିଣ୍ଡ ବାହାର କରିଦେବା କାଡ଼ମ୍ବିନୀ ବ୍ରତର ଉଦ୍ଦେଶ୍ୟରେ ଖଣ୍ଡବାଣୀ ରଚିତ ହୋଇଥିଲା । ଆସିକାରେ "ମୋ ମାତୃଭାଷା" ନାମରେ ଖଣ୍ଡିଏ ପୁସ୍ତକ ଲେଖିଥିଲି ।

୧୯୧୭ରେ ମୁଁ ପର୍ଯ୍ୟଟି ନେଇ ମହାର୍‌ଠାରେ ଥିଲା-ବେଳେ ଦେଖିଲି ଯେ ସେଠାରେ କାଳି ଗୋରୁମାନଙ୍କ ପାଇଁ ବାହାରେ କୌଣସି ଘର ନଥିବାରୁ ବର୍ଷାକାଳରେ ଗାଈଗୁଡ଼ିକ ବହୁତ କଷ୍ଟ ଭୋଗ କରନ୍ତି । ଶୀତ, କାକର, ବର୍ଷା, ପବନ ସହ୍ୟ କରି ରାତିଯାକ ପଦାରେ ପଡ଼ିରହନ୍ତି । ମୁଣ୍ଡ ଗୁଞ୍ଜିବାକୁ ଠିକଏ ଜାଗା ନାହିଁ । ଝଡ଼, ଲଗାଣ ବର୍ଷା ତୋଫାନ ହେଲେ ଅନେକ ଗାଈ ବାଛୁରୀ ମରିପଡ଼ନ୍ତି । କେହି ଆହା କରିବାକୁ ନଥାଏ ।

ଅନେକ ଗୃହସ୍ଥ ନିଜ ଘର ଗାଈକୁ କେତେବେଳେ ଦେଖୁନଥାନ୍ତି ନାହିଁ କାହାର ବା ଗୋଠିଆ ଗାଈକୁ ଦେଖୁଛନ୍ତି କିଏ ? ମୋର ଗ୍ରାମ ଦେଶୁଡ଼ି ମଠର ଅମ୍ବିଚାରୀ ମଧ୍ୟରେ ମୁଁ ଗୋଟିଏ ଗୋଶାଳା ନିର୍ମାଣ କରାଇଦେଲି । ଗାଁ ଧୋବା ହରି ସେଠୀକୁ ଏହି ଗୋଶାଳା ନିର୍ମାଣ କାର୍ଯ୍ୟରେ ନିଯୁକ୍ତ କରିଥିଲି । ଏହି ଭିତରେ ଗାଈ ଓ ବାଛୁରୀ ପ୍ରାୟ ଏକଶତ ପର୍ଯ୍ୟନ୍ତ ରହିଯାଇ ଶୀତ, ପବନ, ବର୍ଷାରୁ ବଞ୍ଚିଯାଇ ପାରନ୍ତି । ଏହି ଗୃହ ନିର୍ମାଣରେ ମୋର ଦେଢ଼ଶହ ଟଙ୍କା ଖରଚ ହୋଇଥିଲା । ପୁଣି ଆମ ଗାଁ ଦେଶୁଡ଼ି ମଠରେ ବୃଦ୍ଧି ସ୍ୱାଇଁ ଘର ଏକ ପୋଖରୀ ଥିଲା । ପିଲାଦିନେ ଆମ୍ଭେମାନେ ସେହି ପୋଖରୀରେ ଗାଧୋଉଥାଉ । ଏବେ ସେହି ପୋଖରୀଟା ଶୁଖି ପଡ଼ିଅଛି । ତହିଁରେ ଟୋପେ ମାତ୍ର ଜଳସ୍ପର୍ଶ କରିବାକୁ ନଥାଏ । ସ୍ନାନ ପାନାଦି ହେତୁ ଗ୍ରାମଲୋକେ ବହୁ ଅଭାବ ଅସୁବିଧା କଷ୍ଟ ଭୋଗ କରନ୍ତି । ମୁଁ ଦୁଇଶତ ଟଙ୍କା ଦେଇ ଏହି ପୋଖରୀଟା ଖୋଳାଇ ଦେଲି । ପୁଣି ଏକଶତ ଟଙ୍କା ଖରଚ କରି ପାହାଚ ପଥର ଆଣାଇ ଦେଲି । ଧାମନଗର ଡେପୁଟି କଲେକ୍ଟରଙ୍କ ହାତେ ଏହି ଗ୍ରାମକୁ ଆସିଥିଲେ । ଏହାଙ୍କୁ ଏହି ପୋତା ପୋଖରୀ ଦେଖାଇ ଦିଆଗଲା ଓ ସରକାର ଏହାର ଜୀର୍ଣ୍ଣ ସଂସ୍କାର କରି ଦିଅନ୍ତୁ ବୋଲି ପ୍ରାର୍ଥନା କରାଗଲା । ଡେପୁଟି କହିଲେ ଯେ ଯଦି ଗ୍ରାମଲୋକ ୫୦୦ ଟଙ୍କା ଦିଅନ୍ତି ତେବେ ସରକାର ଟ ୫୦୦ ଙ୍କା ଦେବେ । ଟ ୧୦୦୦ ଙ୍କା ପୋଖରୀ ଖୋଳା ପାହାଚ ପକ୍କା ଇତ୍ୟାଦି ମରାମତି ହୋଇପିବ ।

ଡେପୁଟିଙ୍କ ଆଦେଶ କ୍ରମେ ଓକିଲ ହରିବାବୁ ଟ୨୫୦ଙ୍କା ଦେଲେ ଓ ମୁଁ ଦେଲି ଟ ୨୫୦ ଙ୍କା । ଏହିପରି ୫୦୦ ଟଙ୍କା ଖର୍ଚ୍ଚ ହୋଇ ମୋକଦ୍ଦମା ଖୋଲା ହେଲା । କିନ୍ତୁ ସରକାର ବାହାଦୁର ଅଙ୍ଗୀକୃତ ୫୦୦ଟଙ୍କା ନ ଦେଇ ଏ ପର୍ଯ୍ୟନ୍ତ ଭଣ୍ଡି ଆଣିଛନ୍ତି ।

୧୯୧୨-୧୯୧୩ ଖ୍ରୀଷ୍ଟାବ୍ଦରେ ମୁଁ ବଡ଼ ଖେମୁଣ୍ଡି ଠାରେ ଥିବାବେଳେ ବ୍ରହ୍ମପୁରଠାରେ "ଆଶା"ର ଉତ୍ପତ୍ତି । ବେଲଗୁଣ୍ଠାଠାରେ ପ୍ରତିଷ୍ଠିତ ଲକ୍ଷ୍ମୀ ନୃସିଂହ ଜୀବନ ବୀମା କମ୍ପାନୀ ଯେତେବେଳେ କ୍ଷତିଗ୍ରସ୍ତ ହୋଇ ଅସ୍ତ ହେବାକୁ ବସିଲା ଏବଂ ତତ୍ସଂଲଗ୍ନ ଗଞ୍ଜାମ ପ୍ରିଣ୍ଟିଂ କମ୍ପାନୀ କାର୍ଯ୍ୟାଳୟରେ ବିଶୃଙ୍ଖଳା ଘଟିଲା, ସେତେବେଳେ ଅର୍ଥାତ୍ ୧୯୧୦ରେ କମ୍ପାନୀ ସେକ୍ରେଟାରୀ ଭଗୀରଥି ଦାସେ ଗଞ୍ଜାମ ପ୍ରିଣ୍ଟିଂ କମ୍ପାନୀର ଛାପାକଳ ଓ ତତ୍ସମ୍ବନ୍ଧ ସମସ୍ତ ଉପକରଣ ଗୁଡ଼ିକୁ ଆସିକା ନେଇଗଲେ । ସେଠାରେ ନାନାବିଧ ଛାପାକାର୍ଯ୍ୟରୁ ଉପାର୍ଜିତଧନ ଖରଚ କରି ଆସନ ଜମାଇ ବସିଲେ । ଅଂଶିଦାରମାନଙ୍କୁ ଯଥାଶକ୍ତି ହିସାବ ଦେଖାଇଲେ ନାହିଁ କିମ୍ବା ଲାଭାଂଶ ଦେଲେ ନାହିଁ । ବହୁ ଅଂଶୀଦାର ଥିବାଯୋଗୁଁ ଏକାକୀ କେହି କିଛି ବି ଅଭିଯୋଗ କରି ପାରୁନଥିଲେ । ଦାସେ ଉକ୍ତ ଛାପାକଳ ଓ ଅନ୍ୟାନ୍ୟ ସରଞ୍ଜାମ ଗୁଡ଼ିକୁ ନେଇ ଆସିକା ଠାରେ ବହୁପଇସା ରୋଜଗାର କରି ବସିଲେ ।

ଏହି ସମୟରେ ସୋରଡ଼ା ଲମ୍ବୋଦର ମହାପାତ୍ରଙ୍କ ପୁଅ ମହୁଲିଆ ରଥ ଘର ଦତ୍ତପୁଅ ଶଶିଭୂଷଣ ରଥେ ପାଟନା

କଲେଜରେ ମାଟ୍ରିକ୍ୟୁଲେସନ କ୍ଲାସ ପର୍ଯ୍ୟନ୍ତ ପଢ଼ାଶୁଣା କରି, ମାନ୍ଦ୍ରାଜ, କଟକ, କଲିକତା, ବମ୍ବେ ଇତ୍ୟାଦି ନାନାସ୍ଥାନ ଭ୍ରମଣ କରି ଗଞ୍ଜାମକୁ ଆସି ପହଞ୍ଚିଲେ । ହାତରୁ ପଇସାରୁ ସବୁ ସାରି ଅକର୍ମଣ୍ୟ ହୋଇ ବୁଲୁଥିଲେ । ବ୍ରହ୍ମପୁରଠାରେ ଏକ ଛାପାଖାନା ଓ ସମ୍ବାଦପତ୍ର ପରିଚାଳନା କରିବା ନିମନ୍ତେ ମୋ ନିକଟରେ ସାହାଯ୍ୟ ପ୍ରାର୍ଥୀ ହେଲେ । ସେତେବେଳେ ମୁଁ ଭାଗୀ-ରଥି ଦାସଙ୍କୁ କହିବୋଲି ଶଶିରଥଙ୍କୁ ଗଞ୍ଜାମ ପ୍ରିଣ୍ଟିଂ କମ୍ପାନି ସମ୍ବନ୍ଧ ଗୋଟିଏ ଛାପାକଳ ଏବଂ ଆବଶ୍ୟକ ହେବା ଅନ୍ୟକେତେକ ସରଞ୍ଜାମ ଦେଇଥିଲି । ରଥଙ୍କ ସହିତ ଏହି ଚୁକ୍ତି ହେଲା, ଯେ ସେ ଛାପାଖାନାର ମ୍ୟାନେଜର ହୋଇ ରହିବେ ଏବଂ ଗଞ୍ଜାମ ପ୍ରିଣ୍ଟିଂ କମ୍ପାନି ଅଂଶୀଦାର ମାନଙ୍କୁ ହିସାବ ପତ୍ର ବୁଝାଇଦେଇ ସେମାନଙ୍କ ମଧ୍ୟରେ ଲାଭାଂଶ ବଣ୍ଟନକରି ଦେଉଥିବେ । ସୁରଙ୍ଗି, ବଡ଼ଖେମଣ୍ଡି ଓ ମଞ୍ଜୁଷା ରାଜାମାନଙ୍କଠାରୁ ଏହାଙ୍କୁ ଏକ ହଜାର ପର୍ଯ୍ୟନ୍ତ ଅର୍ଥ ସାହାଯ୍ୟ କରାଇଦେଲି । ରଥେ 'ଆଶା' ନାମକ ସମ୍ବାଦପତ୍ର ପ୍ରକାଶ କଲେ ଏବଂ ମୁଁ ଉକ୍ତ ପତ୍ରର ସମ୍ପାଦକ ହେବବୋଲି ଲୋକରେ ପ୍ରଚାର କରି ଆପଣାର ପ୍ରତିଷ୍ଠା ବଢ଼ାଇଲେ ।

ମୁଁ ଏହି ପତ୍ରକୁ ଅନେକ ଲେଖା ଲେଖି ସାହାଯ୍ୟ କରୁଥାଏ । ବର୍ଷେ ଦୁଇବର୍ଷ ପରେ ଦେଖାଗଲା ଯେ ରଥେ ହିସାବ ପତ୍ର ନ ଦେଖାଇ ଲାଭାଂଶ କାହାକୁ କିଛି ନ ଦେଇ ସବୁ ଆତ୍ମସାତ୍ କରି ବସିଲେ । ଦେଶ ମିଶ୍ରାଣାଦି ସାଧାରଣ ବିଷୟରେ ମାରିବ

ରହି କେବଳ ବ୍ୟକ୍ତିଗତ ବିଦ୍ୱେଷ ପ୍ରଣୋଦିତ ହୋଇ ପକ୍ଷପାତ ଏବଂ ବ୍ୟକ୍ତିଗତ କୁତ୍ସାଗର୍ଭକ ପ୍ରବନ୍ଧାଦି ଲେଖି ନିଜର ସଂକୀର୍ଣ୍ଣ ସ୍ୱାର୍ଥସାଧନ କରିନେବାକୁ ବସିଲେ । ସେତେବେଳେ ମୁଁ ସମସ୍ତ ପ୍ରକୃତ ଘଟଣା ଏବଂ ରଥଙ୍କର ଦ୍ରୋହାଚରଣ ସମ୍ପାଦକଙ୍କ ସାହାଯ୍ୟରେ ଲୋକରେ ପ୍ରକାଶ କରି ଦେଲି । ରଥେ ସେହି ଦିନଠାରୁ ମୋ ପ୍ରତି ଉତ୍ତେଜିତ ହେଲେ । ମୁଁ ଜଣେ ସରକାରୀ କର୍ମଚାରୀ ରେଭେନ୍ସି ହାକିମ ହୋଇ ଦେଶ ମିଶ୍ରଣୀ ରାଜନୈତିକ ଆନ୍ଦୋଳନରେ ହସ୍ତକ୍ଷେପ କରୁଅଛି ବୋଲି ବିଭାଗୀୟ କର୍ତ୍ତୃପକ୍ଷଙ୍କୁ ଜଣାଇଦେଲେ । କୈଫିୟତ ଦେବା ପରେ କର୍ତ୍ତୃପକ୍ଷଙ୍କ ହୁକୁମରେ ନିଷ୍ପତ୍ତି ହେଲା ଯେ ମୁଁ ଆଉ ଗଞ୍ଜାମ ଜିଲ୍ଲାରେ କାର୍ଯ୍ୟ କରିପାରିବ ନାହିଁ । ଅନ୍ୟ ଜିଲ୍ଲାକୁ ମୋର ସ୍ଥାନାନ୍ତର କରାଯିବ । ରଥ ମହାଶୟଙ୍କର ଏହି ଦ୍ରୋହାଚରଣ ଦେଖି ଗଞ୍ଜାମରୁ ଆଉ ଏକ ଖବର କାଗଜ ବାହାର କରିବା ଚେଷ୍ଟା କରାଗଲା ।

ଭଗୀରଥି ଦାସେ ଗଞ୍ଜାମ ପ୍ରିଣ୍ଟିଂ କମ୍ପାନୀର ସମସ୍ତ ସମ୍ପତ୍ତି ସେମାନ ଜମିଦାରୀଠାରେ ରଖି ଆପଣାର କାର୍ଯ୍ୟ ଚଳାଉ-ଥିଲେ । ଧରାକୋଟରୁ କିଶୋର ଚନ୍ଦ୍ର ନାମକ ଜଣେ ଛାପାକଳ କିଣିଆଣି, କିଶୋର ଚନ୍ଦ୍ର ପ୍ରେସ ନାମରେ ପ୍ରିଣ୍ଟିଂ କମ୍ପାନୀର ଅବଶିଷ୍ଟ ଛାପାକଳ ଓ ସରଞ୍ଜାମ ସେମାନ କାର୍ଯ୍ୟ କରୁଥିଲେ । ଏହି କିଶୋର ଚନ୍ଦ୍ର ପ୍ରେସରୁ 'ପ୍ରଜାମିତ୍ର' ନାମକ ସାପ୍ତାହିକ ସମ୍ବାଦପତ୍ର ୧୯୧୭-୧୯୧୮ ଖ୍ରୀଷ୍ଟାବ୍ଦରେ ଆସିବାରୁ ବାହାର

ହୋଇଗଲା । ମୁଁ ସେତେବେଳେ ଛୁଟିରେ ଥିଲି । ଭଗୀରଥି ଦାସଙ୍କ ସଙ୍ଗରେ ଯାଇ ସୁରଙ୍ଗୀ, ବଡ଼ଖେମୁଣ୍ଡି ଓ ବଡ଼ଗଡ଼ରୁ ପ୍ରାୟ ଆଠଶତ ଟଙ୍କା ପ୍ରଜାମିତ୍ରର ସାହାଯ୍ୟ ପ୍ରକାଶେ ମଗାଇ ଦେଇଥିଲି । "ଆଶା"ର ଉତ୍କଣ୍ଠିତ କାମନାରେ ସୁରଙ୍ଗୀ ପାଞ୍ଚଶତ କରଜ ଦେଲେ, ବଡ଼ଖେମୁଣ୍ଡି ଦୁଇଶତ ଦାନ ଦେଲେ ଏବଂ ଆମ୍ଭମାନଙ୍କ ହଦାକ ସ୍ୱରୂପ ବଡ଼ଗଡ଼ ଯେଉଁ ୫° ଟଙ୍କା ଦେଲେ ତାହାସବୁ ପ୍ରଜାମିତ୍ରର ସାହାଯ୍ୟ ପାଇଁ ମୁଁ ଦେଇଥିଲି । 'ଏହିପରି ଭାବରେ ଭଗୀରଥି ଦାସଙ୍କ ସମ୍ପାଦକତ୍ୱ ଓ ତତ୍ତ୍ୱାବଧାନରେ ଆସିକା କିଶୋର ଚନ୍ଦ୍ର ପ୍ରେସରୁ "ପ୍ରଜାମିତ୍ର" ପ୍ରକାଶିତ ହେଲା ।

୧୯୧୭ ଖ୍ରୀଷ୍ଟାବ୍ଦରେ ମୁଁ ଦୀର୍ଘକାଳ ଛୁଟିରେ ଥିଲାବେଳେ ମୋର ଛତ୍ରପୁର ସ୍ଥାନାନ୍ତର ହେଲା । ସେଠାରେ ପ୍ରାୟ ୭ ମାସ ରହିବାକୁ ପଡ଼ିଥିଲା । ଛତ୍ରପୁର ହେଉଛି ଗଞ୍ଜାମ ଜିଲ୍ଲାର ରାଜ-ଧାନୀ । ଏଠାରେ ଜିଲ୍ଲା କଲେକ୍ଟର ଆଦି ଅନେକ ଜିଲ୍ଲା ଅଧି-କାରୀମାନେ ନିବାସ କରନ୍ତି । ଓଡ଼ିଆ ମାନଙ୍କର ଅନଭିଜ୍ଞତାରୁ ଏମାନଙ୍କ ମଧ୍ୟରେ ଜାତିପ୍ରୀତିର ଅଭାବରୁ ପୁଣି ତେଲଗୁ କର୍ମ-ଚାରୀମାନଙ୍କ ପକ୍ଷପାତ ବଶତଃ ଓ ଅତ୍ୟାଚାର ହେତୁ ସ୍କୁଲ, ଅଫିସ ଇତ୍ୟାଦିରେ ଓଡ଼ିଆ ଭାଷାର ଯଥୋଚିତ ନ୍ୟାଯ୍ୟ ବ୍ୟବହାର ହୁଏନାହିଁ । ଓଡ଼ିଆ ଆସାମୀମାନେ ତେଲଗୁ ଭାଷାରେ ତେଲଗୁ ଲୋକଙ୍କ ଦ୍ୱାରା ଲେଖାଇ ନେଉଥିଲେ । ଓଡ଼ିଆ ଭାଷାପ୍ରତି ଏହି ଅନ୍ୟାୟ ଅବସ୍ଥାର ମୋର ସହ୍ୟ ହେଲାନାହିଁ । ଓଡ଼ିଆ ମାନଙ୍କୁ ଆପଣାର ଦସ୍ତାବିଜପତ୍ର କେବଳ ଓଡ଼ିଆରେ ଲେଖାଇ ଆଣିବାକୁ

ବାଧ କଲା । ଏଥିପାଇଁ କେତେ ତେଲଗୁ ଲୋକ ଆପଣାର ଅଯଥା ଲାଭରେ ବ୍ୟାଘାତ ଲାଗିବା ଦେଖି ମୋର ବଦ୍ଧେଶରେ ବହୁଗୀପୂ କର୍ତ୍ତୃପକ୍ଷଙ୍କ ନିକଟକୁ ନାନାପ୍ରକାର ମିଥ୍ୟା ଅଭିଯୋଗ କରି ଲେଖିପଠାଇଲେ । ବହୁକାଳଙ୍କ ଘନିଷ୍ଠବନ୍ଧୁ ଚଣ୍ଡୀ ଗୋଷ୍ଠ-କୁଚିଣୀ ସ୍ୱରୂପ ହୋଇ ବିଜାଗପଟ୍ଟ ଦଳରେ ଯୋଗ ଦେଲେ । ଯ୍ୱାମୀଙ୍କୁ ଉତ୍କଳ ଅଭିଗାନ୍ଥି ସୀତାରମାୟାଙ୍କ ପୁଅ ସେହି ଦଳର ଅଧିନେତା ହୋଇ ବାହାରିଲେ । କର୍ତ୍ତୃପକ୍ଷ ମୋ ଠାରୁ କୈଫିୟତ ନେଲେ, କିନ୍ତୁ ମୋର କିଛି କରିପାରି ନଥିଲେ । ଅସୁସ୍ଥତା ବଶତଃ ମୁଁ ପୁଣି ସେଠାରୁ ଛୁଟିନେଇ ଗଲି । ଶାରୀରିକ ଅସୁସ୍ଥତା ଏବଂ ସରକାରୀ କାର୍ଯ୍ୟରେ ଅନିଚ୍ଛା ସତ୍ତ୍ୱେ ମୁଁ ଦେଢ଼ବର୍ଷ ପର୍ଯ୍ୟନ୍ତ ଛୁଟି ନେଇ ରହିଲି ।

ପାର୍ବତୀପୁରଠାରେ ଅବସ୍ଥାନ କରୁଥିବା ବେଳେ ଡାଃ ଦୋଷରୁ ଶଙ୍କରପ୍ରସାଦ ନାମରେ ଯୋଗ ବା ପାଚକ ପଣି ମୁଁ ଅଭ୍ୟାସ କରିପକାଇ ଥିଲି । ଏହି ଯୋଗ ମୋର ଶରୀର ପକ୍ଷରେ ଅନେକ ସମୟରେ ଉପକାର ହୋଇଥାଏ । କିନ୍ତୁ ପରିଣାମରେ ଏଥିରୁ ରୋଗ ଜନ୍ମି କୋଷ୍ଠବଦ୍ଧ, ଅର୍ଶ, ମଳକଣ୍ଟକ, ମୁଣ୍ଡବ୍ୟଥା, ପେଟ-ବ୍ୟଥା ଇତ୍ୟାଦି ଉପଦ୍ରବ ଜାତ ହେଲା । ଅନେକ ପ୍ରକାର ଔଷଧ ସେବନ କରି ବାରମ୍ବାର ଅନଭିଜ୍ଞ ବୈଦ୍ୟଙ୍କର ସୁଦ୍ଧା ଅନୁସରଣ କରିବାକୁ ପଡ଼ିଲା । ଖୁନ୍ ନାମକ ଜର୍ମାନ ଦେଶ ପଣ୍ଡିତଙ୍କ ସ୍ୱଭାବ ସୁଲଭ ଚିକିତ୍ସା ପ୍ରଣାଳୀ କଥା ଶୁଣି ତତ୍ପ୍ରତି ଆକୃଷ୍ଟ ହୋଇ ୧୯-୧୭ ସାଲରେ ଆସିବାରେ ଏହି ଚିକିତ୍ସା ଆରମ୍ଭ କଲି । ଏହା

ଏକପ୍ରକାର ବ୍ରହ୍ମଚର୍ଯ୍ୟ ନିୟମ । ଏଥିରେ ଭୋଗବିଳାସ ଓ ଜିହ୍ୱା-ଲାଳସା ଛାଡ଼ିବାକୁ ହୁଏ । ପୁଣି ଲଙ୍କାମରିଚ ମସଲା ଇତ୍ୟାଦି ପରିତ୍ୟାଗ କରିବାକୁ ହୁଏ । କଞ୍ଚା ହେଉ ବା ସାଦା ସିଝା ହେଉ ବିଶେଷ ଭାବରେ ଫଳମୂଳ ଖାଇବାକୁ ହୁଏ, ପୁଣି ବେଗ ନିବା-ରଣ ଓ ସ୍ୱାସ୍ଥ୍ୟସାଧନ ସକାଶେ ଜଳବାୟୁ ଓ ଆଲୋକ ବିଶେଷ ପ୍ରୟୋଗ କରିବାକୁ ହୁଏ । ଉଦରର ଅଗ୍ରଭାଗରେ ଏବଂ ନାଭିର ନିମ୍ନ ପ୍ରଦେଶରେ ଶୀତଳ ଜଳ ପ୍ରୟୋଗ କରିବାକୁ ହୁଏ । ଶୀତଳ ଜଳ ଓ ବାଷ୍ପସ୍ନାନ ପୂର୍ବକ ଯଥେଷ୍ଟ ଭାବରେ ବ୍ୟାୟାମ ଓ ମୁକ୍ତ ବାୟୁ ସେବନ କରିବାକୁ ହୁଏ । ଏହାହିଁ ଏହି ଖୁନ ଚିକିତ୍ସାର ମୂଳ ଏବଂ ସ୍ଥୂଳ ନିୟମ । ଏହି ନିୟମ ପାଳନ କରିବାରୁ ମୋର ଶରୀରର ଅତିରିକ୍ତ ସ୍ଥୂଳତା କମିଗଲା । କ୍ରମେ ଏପରି ଶୀର୍ଣ୍ଣ ହୋଇ ଆସିଲି ଯେ ମୋତେ ଅନେକ ଲୋକ ଚିହ୍ନି ପାରିଲେ ନାହିଁ ଓ ଅନେକ ଲୋକ ଦେଖି ଆଶ୍ଚର୍ଯ୍ୟ ହୋଇଗଲେ । କିନ୍ତୁ କୃଶକାୟ ହେଲେ ସୁଦ୍ଧା ବଳ ଊଣା ନଥିଲା । ଏହି ଚିକିତ୍ସା ଅବଲମ୍ବନରୁ ଦୁଇବର୍ଷ ପରେ କୌଣସି ଅଜ୍ଞାତରୁ ଜ୍ୱର ହୋଇଗଲା, ଯଥାଯଥ ନିୟମ ପାଳନ କରି ପାରିଲି ନାହିଁ ପୁଣି ଅତିରିକ୍ତ ପରିମାଣରେ ଦାଉ ବା ତପ୍ତବାଷ୍ପ ପ୍ରୟୋଗ କରିଦେଲି । କେତେଦିନ ଜ୍ଞାନ ଶୂନ୍ୟ ହୋଇ ପଡ଼ିଲି । ସେତେବେଳେ ବୈଦ୍ୟମାନେ ଉତ୍କଟ ଔଷଧ ଖୁଆଇଦେଲେ । ପୀଡ଼ା ଦିନକୁ ଦିନ ବଢ଼ିଲା । ପ୍ରାୟ ଦୁଇମାସ କାଳ ଶଯ୍ୟାଗତ ହୋଇପଡ଼ିଲି । କ୍ରମେ କ୍ରମେ ଆରୋଗ୍ୟ ଲାଭ କଲି ଏବଂ ଖୁନ୍ ନିୟମ ମଧ୍ୟ ଛାଡ଼ି ଆୟୁର୍ବେଦ ଔଷଧ ବ୍ୟବହାର କଲି ।

୧୯୬୦ ଜାନୁଆରୀ ମାସରେ ଆମ୍ଭମାନେ ରାମେଶ୍ବର ତୀର୍ଥ ଯାତ୍ରାରେ ବାହାରିଲୁ । ଆମ ସ୍ତ୍ରୀ, ପୁତ୍ରାଣୀ ନାରପୁଣ, ସମ୍ବନ୍ଧୀ ମାନମଣି ସାବତ ଏବଂ ତାହାଙ୍କ ସ୍ତ୍ରୀ ପୁଷ୍ପି ବେଣୀପଲ୍ଲୀ ରଘୁନାଥ ପାନ ଏବଂ ତାହାଙ୍କର ବିଧବା ଝିଅ ଓ ଦୁଇ ଭଉଜ, ଏହିପରି ନଅଜଣ ହୋଇ ତୀର୍ଥ ଯାତ୍ରାକଲୁ । ହିମାଚଳ, ଗୋଦାବରୀ, କୃଷ୍ଣା, ଚିଦାମ୍ବର, ଶ୍ରୀରଙ୍ଗ ରାମେଶ୍ବର, ଧନୁତୀର୍ଥ ଇତ୍ୟାଦି ବୁଲି ଦେଖି ଏକମାସ ପରେ ବ୍ରହ୍ମପୁର ଫେରିଲୁ । ସେତେବେଳପର୍ଯ୍ୟନ୍ତ ମୋର ଛୁଟି ଶେଷ ହୋଇଥିଲା । ଡାକ୍ତର ଦ୍ବାରା ପରୀକ୍ଷା କରାଇବାକୁ ହେଲା । ଶରୀରର ତତ୍ତ୍ବ ସମ୍ବନ୍ଧରେ ଡାକ୍ତର ଯାହା କହିଲେ ତାହାହିଁ ଶେଷ ସିଦ୍ଧାନ୍ତ । ବ୍ରହ୍ମା ବଳବନ୍ତେଇଲେ ବେଦ ହୁଏ ବୋଲି ଯେଉଁ କଥାଅଛି, ଡାକ୍ତର ସାହେବ ମୋର ଅନୁରୋଧ କ୍ରମେ ମତେ ପେନସନ ସାର୍ଟିଫିକେଟ ଦେଇଦେଲେ । ୧୯୬୦ ଫେବ୍ରୁଆରୀ ଶେଷଠାରୁ ସରକାରୀ କାର୍ଯ୍ୟରୁ ଚିର ବିଦାୟ ବା ଅବସର ଗ୍ରହଣ କରିବାକୁ ହେଲା । ଏହି ଦିନାବଧି ମନ୍ଦାର, ଛତାବର ଓ ଜୟପୁରକୁଣ୍ଡାରେ ରହି ବିଷୟ ଜଞ୍ଜାଳରେ ପଡ଼ି ପ୍ରାୟ ଛ ମାସ କାଟିବାକୁ ହେଲା । ପ୍ରାୟ ୫୦ ବର୍ଷ ହେଲା, ଏ ପର୍ଯ୍ୟନ୍ତ ମୁଁ ଭୁବନେଶ୍ବର, ଓଡ଼ଗାଁ ଓ ଶରଣକୁଳ ଯାଇପାରି ନଥିଲି । ଏହି ଅବସରରେ ଓଡ଼ଗାଁ, ଶରଣକୁଳ ଯାଇ ରଘୁନାଥ ଓ ଲଡ଼ୁବାବାଙ୍କ ଦର୍ଶନ କଲି । ପୁଣି ଭୁବନେଶ୍ବର ଓ ପୁରୀରେ ୧୦/୧୫ ଦିନ ରହି ସେଠାରେ ସ୍ବାସ୍ଥ୍ୟ ଅନୁକୂଳ ଜଳବାୟୁ ଓ ସାଗର ସମୀରଣ ସେବନ କରି ଫେରିଲି ।

୧୯୨୦ ଅଗଷ୍ଟ ମାସରେ ରସୁଲକୁଣ୍ଡାଠାରେ ଉତ୍କଳ ପ୍ରେସ ନାମକ ଏକ ଛାପାଖାନା ସ୍ଥାପନର ବ୍ୟବସ୍ଥା କରାଗଲା । ବେଲଗୁଣ୍ଠା ଗ୍ରାମ ନିବାସୀ ଆନନ୍ଦ ସାହୁଙ୍କ ମନ୍ତ୍ରଣାରେ ଏହି ପ୍ରସ୍ତାବ ଗୃହୀତ ହେଲା । ୫ ଟଙ୍କା ମୂଲ୍ୟର ଏକ ଏକ ଅଂଶ ସଂଗ୍ରହକରି ବହୁ ଲୋକଙ୍କ ସମବେତ ଚେଷ୍ଟାରେ ଏହି ଛାପାଖାନା ବ୍ୟବସାୟ ଚଳାଇବା ସ୍ଥିର ହେଲା । ଅକ୍ଷର, ପ୍ରସ୍ତର, ବିଜ୍ଞାପନ ଏବଂ ଉପକରଣ ସଂଗ୍ରହ ଇତ୍ୟାଦିରେ ନିଜ ହାତରୁ ଅନେକ ଟଙ୍କା ଖର୍ଚ୍ଚ କରାଗଲା । ଛ ମାସ ପର୍ଯ୍ୟନ୍ତ ଗୃହୀଲୁ । ଅଂଶ ମୂଲ୍ୟ ରୂପେ ପ୍ରାୟ ଦେଢ଼ଶତ ମାତ୍ର ଟଙ୍କା ସଂଗୃହୀତ ହେଲା । ଏହି ସମବେତ ଉଦ୍ୟମରେ ଲୋକଙ୍କର ସହଯୋଗିତା ଓ ଉତ୍ସାହ ନ ଦେଖି ଉକ୍ତ ଉଦ୍ୟୋଗ ପରିତ୍ୟାଗ କରାଗଲା । ଅଂଶୀଦାର-ମାନେ ଦେଇଥିବା ଅଂଶ ମୂଲ୍ୟ ସେମାନଙ୍କୁ ଫେରାଇ ଦିଆଗଲା । ବେଲଗୁଣ୍ଠା ଜୀବନବୀମା କମ୍ପାନୀ ବହୁତ ଲୋକଙ୍କୁ ଦଗା ଦେଇଥି-ବାରୁ ଲୋକଙ୍କର କମ୍ପାନୀ ବ୍ୟବସାୟରେ ଆଉ ବିଶ୍ୱାସ ହୁଏ ନାହିଁ । ତାପରେ ସ୍ୱଦେଶୀ ନାମରେ ନିଜର ଏକ ଛାପାଖାନା ରଖିବାକୁ ହେଲା । ଆସିକା ଭଗୀରଥି ଦାସଙ୍କଠାରୁ ଗଞ୍ଜାମ ପ୍ରିଣ୍ଟିଂ କମ୍ପାନୀ ସମ୍ବନ୍ଧ ଏକ ଗ୍ରେଟ୍ ଛାପାକଳ ପୁଣି କେତେକ ପୁରୁଣା ଅକ୍ଷର ପ୍ରଭୃତି ଉପକରଣ ଟ ୪୦୦ଙ୍କା ଦେଇ କିଣିବାକୁ ହେଲା । ଗଞ୍ଜାମର ତେଲଗୁ ଓଡ଼ିଆ ବିବାଦ ବିସମ୍ବାଦ ହେଉନ ଲେଖାଲେଖି ଚାଲିପାରେ ଏବଂ ଜିଲ୍ଲାର ଅଶାନ୍ତି ଘଟିପାରେ, ଏହି ଆଶଙ୍କା କରି କଲେକ୍ଟର ସାହେବ ବିନା ଜାମିନରେ ଛାପା-ଖାନା ଚଳାଇବାକୁ ପ୍ରଥମେ ଅନୁମତି ଦେଲେ ନାହିଁ । ପରେ

ତାଙ୍କୁ ନାନାପ୍ରକାର ବୁଝାଇ ସୁଝାଇ ବିନା ଜାମିନରେ ଅନୁମତି ପାଇବାକୁ ହେଲା । କିଛିଦିନ ପରେ ସ୍ୱଦେଶୀନାମକ ସାପ୍ତାହିକ ପତ୍ର ପ୍ରକାଶ କରିବାକୁ ଗଲାବେଳେ ଅସହଯୋଗ ଆନ୍ଦୋଳନରେ ମୋର ସମ୍ପର୍କ ଅଛି ବୋଲି ଦିଆଯାଇଥିବା ଆଦେଶ ଫେରାଇ ନେଲେ । ଉତ୍ସୁଳକୁଣ୍ଡ ଠାରେ ସ୍ୱଦେଶୀ ଛାପାକଳ ଧୀରେ ଧୀରେ ଚାଲିଛି । ଆନନ୍ଦ ସାହୁ ଏହି ଛାପାଖାନାର ଚାଳକ ନିଯୁକ୍ତ ଅଛନ୍ତି ।

-୦-

## ଅସହଯୋଗ ଆନ୍ଦୋଳନ

ଇଂରେଜମାନେ ପ୍ରାୟ ଦେଢ଼ ଶହ ବର୍ଷ ରାଜତ୍ୱ କଲେଣି, ତଥାପି ଦିନକୁ ଦିନ ଅଧିକ ପ୍ରଜା ଶୋଷଣ ହେଲା । ଜନସାଧାରଣ ଦିନକୁଦିନ ଅଧିକ ଦରିଦ୍ର, ଅବିଦ୍ୟ ଓ ଅପାରଗ ହେଲେ । ସାୟତ୍ତଶାସନ ପାଇବା କୌଣସି ଆଶା ଦେଖାଗଲା ନାହିଁ । ଗୋରାମାନେ କଳା ଲୋକଙ୍କୁ ପଶୁ ଜ୍ଞାନ କଲେ, ତାଙ୍କ ପ୍ରତି ଅବିଶ୍ୱାସ ଏବଂ ଦ୍ରୋହାଚରଣ କଲେ । ପରିଶେଷରେ ଦେଶବାସୀଙ୍କ ମାନ, ମହତ, ଇଜ୍ଜତ ନଷ୍ଟ ହେଲା ଏବଂ ନିରୀହ ଲୋକମାନେ ବିରାଡ଼ି କୁକୁର ପରି ସ୍ଥାନେ ସ୍ଥାନେ ମରି ପଡ଼ିଲେ । ମୁସଲମାନ ଖଲିଫା ପ୍ରତି ଦ୍ରୋହାଚରଣ ଏବଂ ପଞ୍ଜାବ ଅତ୍ୟାଚାର ଅସହ୍ୟ ହେଲା । ସେତେବେଳେ ମହାତ୍ମା ଗାନ୍ଧି ସତ୍ୟାଗ୍ରହ

କରି ସରକାର ସହିତ ସମସ୍ତ ସମ୍ପର୍କ ଛିଡ଼ାଇ ଅସହଯୋଗ ନୀତି ପ୍ରସ୍ତାବ କଲେ । ୧୯୨୦ ସାଲରେ ଏଥି ସକାଶେ କଲିକତାଠାରେ କଂଗ୍ରେସର ବିଶେଷ ଅଧିବେଶନ ବସିଲା । ଏଥିରେ କେତେ କେତେ ଦେଶ ନେତାମାନେ ଗାନ୍ଧିଙ୍କ ସହିତ ଏକମତ ହୋଇ ପାରିନଥିଲେ । କିନ୍ତୁ ଡିସେମ୍ବର ମାସରେ ନାଗପୁରଠାରେ ଯେଉଁ କଂଗ୍ରେସ ସଭା ହେଲା ତହିଁରେ ଭାରତର ପ୍ରାୟ ସମସ୍ତ ମୁଖ୍ୟନେତାମାନେ ମହାତ୍ମା ଗାନ୍ଧିଙ୍କ ସହିତ ଏକମତ ହେଲେ ଏବଂ ସତ୍ୱରେ ଭାରତର ସ୍ୱରାଜ୍ୟ ପାଇବା ନିର୍ଦ୍ଧାରଣ କରାଗଲା । ନିରୁପଦ୍ରବ, ଅହିଂସାତ୍ମକ, ଶାନ୍ତିମୂଳ ଅସହଯୋଗ ଦ୍ୱାରା ସ୍ୱରାଜ୍ୟ ଲାଭ କରିବା ସ୍ଥିର ହେଲା । ଭାରତୀୟ ମାନଙ୍କର ଏହି ଆନ୍ଦୋଳନ ଦମନ କରିବାପାଇଁ ଇଂରେଜ ସରକାର ରୁଦ୍ରମୂର୍ତ୍ତି ଧାରଣ କରି ଅସହଯୋଗୀ ମାନଙ୍କୁ ବହୁଦଣ୍ଡ ଦେଲେ । ଚିତ୍ତରଞ୍ଜନ, ମୋତିଲାଲ, ଲଜପତରାୟ ଇତ୍ୟାଦି ନେତାମାନଙ୍କୁ ବନ୍ଦୀ କଲେ । ୧୯୨୧ ଡିସେମ୍ବର ଅହମଦାବାଦ କଂଗ୍ରେସରେ ପୁନରପି ସେହି ନିରୁପଦ୍ରବ ଅସହଯୋଗ ନୀତି ପାଳନ ନିର୍ଦ୍ଧାରିତ ହେଲା । ୧୯୨୨ ମାର୍ଚ୍ଚ ୧୮ ତାରିଖରେ ମହାତ୍ମା ଗାନ୍ଧିଙ୍କୁ ମଧ୍ୟ ସରକାର ବନ୍ଦୀ କଲେ । ତଥାପି ଏହି ଅସହଯୋଗ ଆନ୍ଦୋଳନ ଚାଲିଲା ।

ଅସହଯୋଗ ଆନ୍ଦୋଳନରେ ସବିଶେଷ ବୃତ୍ତାନ୍ତ ଏଠାରେ ଲେଖାଯାଇ ନାହିଁ । ସଂକ୍ଷେପରେ (୧) ବିଦେଶୀ ସୂତା ଓ ଲୁଗା

ପରିତ୍ୟାଗ କରି ଭାରତ ବାସିମାନେ ନିଜେ ଅଧିଷ୍ଠରେ ସୂତା କାଟି ଖଦଡ଼ କରି ପିନ୍ଧିବେ । (୨) ସରକାରୀ କୋର୍ଟ କଚେରୀ ସମ୍ପର୍କ ତ୍ୟାଗକରି ଗ୍ରାମପଞ୍ଚାୟତଦ୍ୱାରା ଆପଣାର ବିବାଦ ନିଷ୍ପତ୍ତି କରିବେ । (୩) ସରକାରୀ ସ୍କୁଲ ପାଠ ଛାଡ଼ି ଜାତୀୟ ବିଦ୍ୟାଳୟ ସ୍ଥାପନ କରି ତହିଁରେ ଦେଶୀୟ ଭାଷାରେ ଜାତୀୟ ଶିକ୍ଷା ଦେବେ । (୪) ସବୁ ଭେଦ ଓ ହିଂସା ଛାଡ଼ି ହିନ୍ଦୁ, ମୁସଲମାନ, ଖ୍ରୀଷ୍ଟିଆନ, ଜୈନ, ପାରସି ସମସ୍ତେ ପରସ୍ପର ସ୍ନେହ ଓ ସହାନୁଭୂତି ଦେଇ ଏକ ହେବେ ଏବଂ ଭାରତର ସ୍ୱାଧୀନତା ପାଇଁ, ପ୍ରାଣପଣେ ଚେଷ୍ଟା କରିବେ । କେତେକ ଭାରତୀୟ ମଡରେଟ୍ ନାମରେ ପୃଥକ୍ ରହି ସରକାର ପକ୍ଷରେ ରହିଛନ୍ତି । ଏମାନେ ଦାସତ୍ୱନୋଚିତ ବୁଦ୍ଧି ଘେନି ଭ୍ରାନ୍ତ ଧାରଣାର ବଶୀଭୂତ ହୋଇ କମ୍ବା ସଂକୀର୍ଣ୍ଣ ସ୍ୱାର୍ଥ ସାଧନଉଦ୍ଦେଶ୍ୟରେ ଦେଶର ଏହି ପବିତ୍ର ଆନ୍ଦୋଳନରେ ଯୋଗ ନ ଦେଇ ଅତ୍ୟାଚାରୀ ସରକାର ପକ୍ଷ ଗ୍ରହଣ କରିଛନ୍ତି । ଯାହା ହେଉ ପରିଣାମରେ ସତ୍ୟର ଜୟ ହେବ ଏବଂ ପାପର କ୍ଷୟ ହେବ । (୧୯୨୦)

ଆଜକୁ ପ୍ରାୟ ୩୫/୩୬ ବର୍ଷ ହେଲା ଭାରତୀୟ ଜାତୀୟ କଂଗ୍ରେସ ସଭା ବସୁଅଛି । ତହିଁରେ କେବଳ ଦେଶର ମୁଖ୍ୟ ମୁଖ୍ୟ ଲୋକମାନେ କାଗଜ କଲମରେ ମତ ବିତର୍କ କରି ଏବଂ ସରକାରଙ୍କ ଠାରେ ନିବେଦନ କାକୁସ୍ଥ, ବିନୟ ଇତ୍ୟାଦି କରନ୍ତି । ତହିଁରେ ସରକାର କର୍ଣ୍ଣପାତ କରନ୍ତି ନାହିଁ । ଅ.ଜ କଂଗ୍ରେସ ସଭାର ସେ

ଗୀତ ଗାହିଁ । ଶରୀର ପଡ଼ିଯାଉ କର୍ମ ସାଧିବାକୁ ହେବ । ଆଜି ଜନସାଧାରଣ ଏହି କଂଗ୍ରେସ ଆନ୍ଦୋଳନରେ ଯୋଗ ଦେଇଛନ୍ତି । ପ୍ରତ୍ୟେକ ପ୍ରଦେଶରେ କଂଗ୍ରେସର ଶାଖା ବସିଅଛି । ପୁଣି ପ୍ରାଦେଶିକ କଂଗ୍ରେସ ତରଫରୁ ପ୍ରତ୍ୟେକ ଜିଲ୍ଲାରେ ଜିଲ୍ଲା କଂଗ୍ରେସ ସଂସ୍ଥାପିତ ହୋଇଅଛି । କଂଗ୍ରେସ କାର୍ଯ୍ୟ ଚଳାଇବା ସକାଶେ ଦେଶରେ କୋଟିଏ ଉପରେ ଟଙ୍କା ଛମାସ ମଧ୍ୟରେ ସଂଗୃହୀତ ହୋଇଅଛି ଏବଂ କୋଟିଏ ଲୋକ କଂଗ୍ରେସ ସଭାର ସଭ୍ୟ ହୋଇ ଅଛନ୍ତି । ଉତ୍କଳ ପ୍ରାଦେଶିକ କଂଗ୍ରେସ କମିଟିର ସଭାପତି ଦେଶବନ୍ଧୁ ଗୋପବନ୍ଧୁ ଦାଶ । ଆଜି ଏହି ସଭାପତି ମହୋଦୟ ଦେଶ ପାଇଁ ନିଜେ କାରାଦଣ୍ଡ ଭୋଗ କରିଛନ୍ତି । ଅନେକ କଂଗ୍ରେସ କର୍ମୀମାନେ ବନ୍ଦୀ ହୋଇ ଅସହ୍ୟ ଯନ୍ତ୍ରଣା ଭୋଗ କରୁଛନ୍ତି । ଆଜିକାଲି କଂଗ୍ରେସ ମେମ୍ବର ହେବା, ସ୍ୱରାଜ୍ୟ ପାଣ୍ଠିରେ ଚାନ୍ଦାଦେବା, ଲୋକଙ୍କୁ ସେମାନଙ୍କ ଧର୍ମ କର୍ମ ଓ ଅଧିକାର ବୁଝାଇ କହିବା ପୁଣି ସୂତା କାଟି ଦେଶୀ ଖଦି ପିନ୍ଧିବା ସରକାରଙ୍କ ଦୃଷ୍ଟିରେ ମହାନ ଅପରାଧ ହୋଇଅଛି, ଏଥିପାଇଁ ଲୋକେ ଜେଲ ଯାଉଛନ୍ତି ।

-*-

# ସ୍ୱରାଜ୍ୟ

( ଏହି ଭିକ୍ଷା ମାଗୁଛୁ ହରି ବୃତ୍ତିରେ )

ଶୁଣ ଆମ୍ଭ ଗୁହାରି ହରି
କୃପା କରି ଦିଅ ସ୍ୱରାଜ୍ୟ ଭିକ୍ଷା,
ନଅଛନ୍ତି ତୁରି ଦରିଆ ପାରି
ବିଦେଶୀ ବେପାରୀ ସବୁ ଆମ୍ଭରି । (ପଦ)

ସବୁ କୁଳିଆ ପାଠ ପଢ଼ି
ଲୋକେ ଦେଲେ ସ୍ୱଧର୍ମ ଛାଡ଼ି
କଲେ ଚାକିରି, ନ ବାବୁଗିରି
ଇଂରାଜୀ ସଙ୍ଗରେ ନ ହେଲେ ସରି ।୧।

ଭାଇମାନେ ହେଲେ ଭଗାରି
କଲେ ସଉତୀନ ଚାକିରି,
ଦେଶ ଅବସ୍ଥା ନ କଲେ ଚିନ୍ତା
ଆମ ଘରେ ଆମେ ହେଲୁ ଭିକାରୀ ।୨।

ଧନ ଲୋଭେ ବିଦେଶୀ ବେପାରୀ
ବିକନ୍ତି ମଦ ଠିକା କରି,
ଅଫିମ ମଦ ଅତି ଉନ୍ମାଦ
ହେଲୁ ଆମ୍ଭ ସବୁ ସମ୍ପଦ ହାରି ।୩।

ଭାରତ ଦେଶ ନରନାରୀ
ଗ୍ରାମ ପଞ୍ଚାୟତ ନ କରି,
ଯାଚନ୍ତି ଯାଇ                    ମାମଲା କରି
କୋର୍ଟରେ କରନ୍ତି ଉଗିରି ଜାରି ।୪।

ପୂର୍ବର ବସ୍ତ୍ର କାରିଗରି
ଆଜି ହେଲା କି ହତଶିରି,
ଦେଶର ତନ୍ତୀ                    ନବୁଣି ଖଦି
ପରକୁଲି କରି ପାଏ ମଜୁରି ।୫।

୧୯୨୧-୨୨ ଅସହଯୋଗ ଆନ୍ଦୋଳନ ସମୟରେ ଲିଖିତ—

ଶ୍ରୀବତ୍ସ ପଣ୍ଡା

ଉତ୍କଳ ପ୍ରାଦେଶିକ କଂଗ୍ରେସ କମିଟି କଟକର, ମୁଁ ଜଣେ ମେମ୍ବର । ବାର୍ଷିକ ଚାନ୍ଦା ୪ ୫ ଙ୍କା ଦେବାକୁ ହୁଏ । ଗଞ୍ଜାମ ଜିଲ୍ଲା କଂଗ୍ରେସ କମିଟିର ସମ୍ପାଦକ ଶ୍ରୀଯୁକ୍ତ ନିରଞ୍ଜନ ପଟ୍ଟନାୟକ । ଏ ମହାଶୟ ଏମ୍. ଏ. ଶ୍ରେଣୀ ପାଠ ଛାଡ଼ିଦେଇ ବହୁକାଳ ସତ୍ୟ କରି, ବହୁ ପରିଶ୍ରମକରି ଦେଶ କାର୍ଯ୍ୟରେ ଲାଗିଛନ୍ତି । ଗଞ୍ଜାମ ଜିଲ୍ଲା କଂଗ୍ରେସ କମିଟିର ମୁଁ ସଭାପତି । ମୋର ଏଥିରେ ନାମ ମାତ୍ର ସିନା, ଅସୁସ୍ଥତା ଯୋଗୁଁ ମୁଁ ସାକ୍ଷାତ ଭାବରେ କିଛି କାର୍ଯ୍ୟ କରିପାରେ ନାହିଁ । ଅସୁସ୍ଥତା ଯୋଗୁଁ

୧୯୨୧ ଶେଷ ଭାଗରେ ମୁଁ ସରପଞ୍ଚ ପଦ ଗ୍ରହଣ କରିଥିଲି । ୧୯୨୨ରେ ପୁନରାପି ମନୋନୀତ ହୋଇ କିଛି କାଳ ସରପଞ୍ଚ ଥିଲି । ୧୯୨୨ ଶେଷରେ ଅସୁସ୍ଥତା ହେତୁ ସରପଞ୍ଚ ପଦ ତ୍ୟାଗ କରିଅଛି । ତଥାପି ପାଖ ପାଖ ସ୍ଥାନ ଗ୍ରାମ ବୁଲି ୨୦/୨୫ ଖଣ୍ଡି ଗ୍ରାମରେ ପଞ୍ଚାୟତ ସ୍ଥାପନ କଲି । କିନ୍ତୁ ଦୁଃଖର ବିଷୟ ଲୋକମାନେ ଆତ୍ମନିର୍ଭରଶୀଳ ନୁହନ୍ତି । ସ୍ୱାର୍ଥପର ଏବଂ ଅତ୍ୟନ୍ତ ଭୟାକ୍ତ ହୋଇ ପଡ଼ିଛନ୍ତି । ପଞ୍ଚାୟତ ଚଳାଇ ପାରୁ ନାହାନ୍ତି । ଯାହାହେଉ ସ୍ୱଦେଶ ପ୍ରତି କ୍ରମେ କ୍ରମେ ଲୋକଙ୍କର ଆଗ୍ରହ ବଢ଼ୁଅଛି । ଲୋକେ ଶହେ ବର୍ଷ ହେଲା ଯାହା ଗ୍ରହିଛନ୍ତି ତାହା ବର୍ଷକରେ ଧରିନେବା ସହଜସାଧ୍ୟ ନୁହେଁ । ଅତଏବ ନିରାଶର କୌଣସି କାରଣ ନାହିଁ । ସ୍ୱରାଜ୍ୟ ପାଣ୍ଠିରେ ଧନ ସଂଗ୍ରହ ଲାଗିଛି ଏବଂ ଉକ୍ତ ଧନ କଟା, ଅରଟ, ସୂତା, ଖଦି ଇତ୍ୟାଦି ଦେଶୀୟ ଅନୁଷ୍ଠାନରେ ଖର୍ଚ୍ଚ ହେଉଛି ।

୧୯୨୧ ସାଲ ପାଇଁ ସ୍ୱରାଜ୍ୟ ପାଣ୍ଠିରେ ମୁଁ ଦେଇଥିଲି ଏକଶତ ଟଙ୍କା । ୧୯୨୨ ରେ ଟ ୩୦ ଙ୍କା ମାତ୍ର ଦେଇଥିଲି । ୧୯୨୨ ମାର୍ଚ୍ଚ ତା ୨୮ ରିଖରେ ମହାତ୍ମା ଗାନ୍ଧୀ ବନ୍ଦୀ ହେଲେ । ସେହିଦିନ ତାହାଙ୍କ କାରାଦଣ୍ଡ ଦିବସ ଉପଲକ୍ଷେ ପ୍ରତିମାସ ତା ୧୮ ରିଖ ଦୈନିକ ଆଦାୟ ଟ ୫ ଙ୍କା ସ୍ୱରାଜ୍ୟ ପାଣ୍ଠିରେ କେତେ ମାସ ପର୍ଯ୍ୟନ୍ତ ମୋର ଦିଆଯାଇଅଛି ।

ପ୍ରାୟ ଦଶ ବର୍ଷ ପୂର୍ବେ ପୁରୀଠାରେ ଏକ ବିଧବାଶ୍ରମ ସ୍ଥାପନ କରିଯିବା ପାଇଁ ମୁଁ ପ୍ରସ୍ତାବ କରିଥିଲି । ଉକ୍ତ ଆଶ୍ରମ ସକାଶେ ମୋର ବିଧବା ମାତାଙ୍କ ଦୁଇଗୋଟି ବନ୍ଧକ ଦସ୍ତାବିଜ ବାବଦ ପାଞ୍ଚଶତ ଟଙ୍କା ମୁଁ ଦେବାକୁ କହିଥିଲି । ମୟୂରଭଞ୍ଜ ମହାରାଜା ମଧ୍ୟ ଟ ୧୫୦୦ ଙ୍କା ଦେବାକୁ ସ୍ୱୀକାର କରିଥିଲେ । ଉକ୍ତ ପ୍ରସ୍ତାବିତ ଆଶ୍ରମ ଏପର୍ଯ୍ୟନ୍ତ ସ୍ଥାପିତ ହୋଇ ପାରିନାହିଁ । ଉକ୍ତ ଦସ୍ତାବିଜରୁ ମୁଁ ପାଇଲି ଟ ୩୦୦ ଙ୍କା । ଉକ୍ତ ତିନିଶତ ଟଙ୍କା ଆସିକାଠାରେ ସଂସ୍ଥାପିତ ସଂସ୍କୃତ ବିଦ୍ୟାଳୟ ପାଇଁ ଦେଇଥିଲି । ବର୍ତ୍ତମାନ ୧୯୨୨ ଜ୍ୟେଷ୍ଠଠାରୁ ପୁରୀ ଗୌଡ଼ବାଡ଼ ସାହି, ପଣ୍ଡିତ ବଳଭଦ୍ର ମିଶ୍ରେ ଗୋଟିଏ ବିଧବାଶ୍ରମ ଖୋଲିବା ଚେଷ୍ଟା କରିବାରୁ, ମୁଁ ଉକ୍ତ ଆଶ୍ରମ ସକାଶେ ମାସିକ ଟ ୧୦ ଙ୍କା ହିସାବରେ ៣/୪ ମାସ ଦେଇଅଛି । ଆର୍ଯ୍ୟ ସମାଜକୁ ଲେଖା-ଯାଇଥିଲି ଯେ, ସେ ଯଦି ଏହି ଆଶ୍ରମ ଭାର ଗ୍ରହଣ କରିବେ, ତେବେ ମୁଁ ମୋର ବାର୍ଷିକ ଛ ଶହ ଟଙ୍କା ଆଦାୟ ଆସିକା ଜମି ଖଣ୍ଡେ ଆର୍ଯ୍ୟ ସମାଜ ନାମରେ ଦେବାକୁ ଉଇଲିନାମା ଲେଖିଦେବି ।

-o-

# ପୁରୀରେ ଘର କରିବା କଥା

ଭାରତ ମହାଦେଶରେ ପୁରୀ ଏକ ପବିତ୍ରଧାମ । ଉତ୍କଳ ମହାରାଜାଙ୍କର ଉତ୍କଳ ଜାତିର ଏହା ଏକ ମହାନ୍ କୀର୍ତ୍ତି । ଏଠାରେ ଖଣ୍ଡେ ଘର ରଖି ଶେଷକାଳ କଟାଇବା ମୋର ଇଚ୍ଛାଥାଏ । ଏତେକାଳ ପରେ ଆମ୍ଭର ନେତଗାଁ (ନେଟଙ୍ଗା) ଜମି ଟ୨୦୦୦ଙ୍କୁ ବନ୍ଧକ କରି, ରଙ୍ଗନାଠା ସାବତଭାଇରୁ ୨୦୦୦ ଟଙ୍କା ଋଣକରି, ବାକି ଟ ୨୦୦୦ ଙ୍କା ଏଣ୍ଡୁ ତେଣୁ ସଂଗ୍ରହ କରି ଛ ହଜାର ଟଙ୍କା ଧରି ଆମ୍ଭର ଛାପାଖାନା ଗୁଳକ ଆନନ୍ଦ ସାହୁଙ୍କୁ ସଙ୍ଗେ ନେଇ ପୁରୀଗଲି ବାଲିସାହିରେ ୧୯୨୨ ଅକ୍ଟୋବର ତା ୨୪ ରିଖରେ ଚିନ୍ତାମଣି ପଣ୍ଡାଙ୍କ ଘର କିଣିବାକୁ ହେଲ । ଉତ୍କଳୀୟ ମାନଙ୍କର ଭାରତ ପ୍ରସିଦ୍ଧ କୀର୍ତ୍ତି ଏହିପରି ଧାମରେ ବଙ୍ଗାଳି, ମାରୱାଡ଼ି ଇତ୍ୟାଦି ନାନା ଶ୍ରେଣୀର ଲୋକେ ଘରକରି ରହୁଛନ୍ତି । ବାସିନ୍ଦା ଓଡ଼ିଆମାନେ ସହର ଭିତରେ ଦଞ୍ଚ ସଂକୀର୍ଣ୍ଣ ରୁଦ୍ଧ ଜାଗାରେ ପଡ଼ିଛନ୍ତି । ବଙ୍ଗାଳିମାନେ ଆସି ସୁବିଶାଳ ପ୍ରଶସ୍ତ ସମୁଦ୍ର ବାଲି, ସାଗର କୂଳ ସବୁ ଆକ୍ରମଣ କରି ଯାଉଛନ୍ତି । ଓଡ଼ିଆମାନଙ୍କର ଉତ୍ସାହ ସାହସ ବୁଦ୍ଧି ବିକ୍ରମ ପୁରୁଷାର୍ଥ ଆଉ ଅଛି ଦେଖା ଯାଉନାହିଁ । ଓଡ଼ିଆମାନେ ଆଜି ଉତ୍ସାହହୀନ, ଦରିଦ୍ର, ଉତ୍କଳୀ ରାଜା ଜମିଦାର ଓ ଧନୀ ଲୋକମାନେ ସମୁଦ୍ର କୂଳରେ ଆପଣାର ସ୍ୱର୍ଗ ଦ୍ୱାରରେ କାହିଁକି ବା ଘର କରିବେ ?

ମୋର ସାହିତ୍ୟ ଚର୍ଚ୍ଚା ବିଷୟରେ ଦୁଇ ଚାରି କଥା କହି ରଖେ । ଛପା ଥିବା ବହି ଖବର କାଗଜରେ ମୁଁ ଲେଖା ଲେଖି

କରୁଥାଏ । ସେଥିପାଇଁ ସାହିତ୍ୟ ସମାଜରେ ମୋର ଟିକିଏ ପରିଚୟ ଥାଏ । ମୁଁ ଭାଗଲପୁର ସବ୍‌ରେଜିଷ୍ଟ୍ରାର ଥିଲାବେଳେ ସେଠା ଲୋକସ୍ଥିତ ମତ ବିଷୟ ନେଇ ଉତ୍କଳ ସାହିତ୍ୟ ମାସିକ ପତ୍ରରେ ଭାଗଲପୁର ଶୀର୍ଷକ ଦୁଇ ତିନିଗୋଟି ପ୍ରବନ୍ଧ ଲେଖିଥିଲି । ମୋର ସେହି ପ୍ରବନ୍ଧ ପାଠକରି କବିବର ରାଧାନାଥ ପ୍ରୀତ ହୋଇ ମୋର ପ୍ରଶଂସା କରିଥିଲେ ଏବଂ ଭାଗଲପୁ ଜୀବନ ବିଷୟରେ ଗୋଟିଏ ପ୍ରବନ୍ଧ ଲେଖିବା ପାଇଁ ମତେ ବିଶେଷ ଅନୁରୋଧ କରିଥିଲେ ।

କବିବରଙ୍କ ସହିତ ମୋର ପ୍ରଥମ ସାକ୍ଷାତ ଉତ୍କଳ ସମ୍ମିଳନୀ ବେଳେ କଟକଠାରେ ଘଟିଥିଲା । ସେତେବେଳେ ମୋର ନାମ ଶୁଣିବା ମାତ୍ରେ କହିଥିଲେ ଯେ, ସେ ମୋତେ ପୂର୍ବରୁ ଭଲକରି ଜାଣନ୍ତି । ମୋର ଭାଗଲପୁର ପ୍ରବନ୍ଧରୁ ସେ ମୋର ପରିଚୟ ପାଇଥିଲେ । ବଡ଼ଖେମୁଣ୍ଡି ଦିଗପହଣ୍ଡି ଠାରେ ମୁଁ ସବ୍‌ରେଜିଷ୍ଟ୍ରାର ଥିଲାବେଳେ ସେଠାକୁ ଥରେ ଭକ୍ତ କବି ମଧୁସୂଦନ ରାଓ ଯାଇଥିଲେ ଏବଂ ମୋତେ ଦେଖି, ମୁଁ ଉତ୍କଳର ବିଦ୍ୟାସାଗର ବୋଲି ସେ ମୋତେ କହିଥିଲେ । ପୂର୍ବେ ବିଧବା ବିବାହ ନେଇ ମୁଁ ସମାଜରେ କିଛି ଆନ୍ଦୋଳନ କରିଥିଲି ଏବଂ ଭାଗଲପୁର ଠାରେ ଏକ ବିଧବାର ବିବାହ କରାଇ ଦେଇଥିଲି ।

ସମ୍ବଲପୁରଠାରେ ଉତ୍କଳ ସମ୍ମିଳନୀର ଏକାଦଶ ଅଧିବେଶନ ବେଳେ ଉତ୍କଳର ବ୍ୟାସକବି ଫକୀରମୋହନ ସେନାପତି

ମୋତେ ଦେଖି କହୁଥିଲେ, "ଆପଣଙ୍କର ସବୁଲେଖା ମୁଁ ମନଯୋଗ କରି ପଢ଼େ । ଆପଣଙ୍କୁ ଅନେକ ଲୋକ ଗାଳି ଦେଇଥାନ୍ତି । ବୁଝିବେ ଯେ ଆପଣଙ୍କ ଲେଖାରେ କିଛି ସାରକଥା ଥିବାରୁ ଲୋକେ ପଢ଼ନ୍ତି ଏବଂ ଗାଳିଦଅନ୍ତି । ସାରକଥା ନଥିଲେ କେହି ଗାଳି ଦଅନ୍ତେ ନାହିଁ ।" ପରେ ପ୍ରସିଦ୍ଧ ମୁକ୍ତି ମଣ୍ଡପର ଦୋଷ ଗୁଣ ମାହାତ୍ମ୍ୟ ସମାଲୋଚନା କରି ଲେଖିଥିଲି । ମୋର ସେ ଲେଖା ଦେଖି ସେଠାକାର କେହି କେହି ପଣ୍ଡିତମାନେ ପଣ୍ଡାଙ୍କୁ ଧର୍ମଦ୍ୱେଷୀ କପରି ଧରିଛି ବୋଲି ମୋ ପ୍ରତି କଟୁ କଟାକ୍ଷ କରିଥିଲେ । କବିଶ୍ରେଷ୍ଠ ଗଙ୍ଗାଧର ମେହେର ପରେ ମତେ କହିଥିଲେ, "ଶ୍ରୀବତ୍ସ ବାବୁ, ଆପଣଙ୍କ ଲେଖାର ମୁଁ ବିଶେଷତ୍ୱ ଉପଲବ୍ଧି କରିଅଛି । ତହିଁରେ ନିର୍ଭୀକ ସତ୍ୟବାଦିତା ସ୍ପଷ୍ଟ ଦେଖାଯାଏ । ତଦ୍ୱାରା ବହୁଲୋକଙ୍କର ବହୁ ଉପକାର ଘଟିଥାଏ ।

-0-

## ସ୍ତ୍ରୀ ଶିକ୍ଷା

ନାରୀ ଜାତିର ଦୁରବସ୍ଥା ଭାରତର ଅବନତିର ଏକମୂଳ କାରଣ । ମୁଁ ବୁଦ୍ଧି ଜାଣିବା ଦିନରୁ ସ୍ତ୍ରୀମାନଙ୍କୁ ଶିକ୍ଷା ଓ ସ୍ୱାଧୀନତା ଦେବା ମୋର ଏକାନ୍ତ ଇଚ୍ଛା । ମୁଁ ଯେତେବେଳେ ଯେଉଁ ସ୍ଥାନରେ ଥାଏ, ମୋର କ୍ଷୁଦ୍ର ଶକ୍ତିରେ ଯେତେଦୂର

ପାରେ, ସେହି ସ୍ଥାନରେ ସ୍ତ୍ରୀ ଶିକ୍ଷାର ପ୍ରଚାର ଏବଂ ବାଳିକା ବିଦ୍ୟାଳୟ ସ୍ଥାପନ ଚେଷ୍ଟା କରିଥାଏ । ଏତେ ବାଧାବିଘ୍ନ ସହ୍ୟକରି ପୁରୁଷୋତ୍ତମପୁର, ଦିଗପହଣ୍ଡି ଗଡ଼, ଆସିକା ଓ ବେଲଗୁଣ୍ଠାରେ ବାଳିକା ପାଠଶାଳାରେ ଯଥାସାଧ୍ୟ ଧନମନ ବ୍ୟୟ କରିଥିଲି । ଏହି ପାଠଶାଳା ଗୁଡ଼ିକ କ୍ରମୋନ୍ନତି ଲାଭକରି ଅଛି । କେତେଗୋଟି ପାଠଶାଳା ଆଜି ସରକାରଙ୍କ ଦ୍ୱାରା ପରିଚାଳିତ ହେଉଅଛି । ୧୯୨୨ ମାର୍ଗଶିର ମାସଠାରୁ ଜନ୍ମଗ୍ରାମ ମନ୍ଦାର ଠାରେ ଗୋଟିଏ ବାଳିକା ପାଠଶାଳା ସ୍ଥାପନ କରି ମାସିକ ଟ ୮ ଙ୍କା ବେତନରେ ରଣପୁର ନିବାସୀ ବାସୁଦେବ ମିଶ୍ର ନାମକ ଜଣେ ସଚ୍ଚରିତ୍ର କର୍ତ୍ତବ୍ୟନିଷ୍ଠ ଶିକ୍ଷକଙ୍କୁ ନିଯୁକ୍ତ କରି ପାରିଅଛି । ଏହି ପାଠଶାଳାରେ ଓଡ଼ିଆ, ବ୍ରାହ୍ମଣ, କେଉଟ, ଧୋବା, ବାଉରୀ, ଦଣ୍ଡାସୀ ଇତ୍ୟାଦି ନାନା ଜାତିରୁ ୨୦-୨୫ ପିଲା ଏକତ୍ର ମିଳିମିଶି ପଢ଼ା ଶୁଣା କରନ୍ତି । ଏହି ପାଠଶାଳା ସ୍ଥାପନ ଏବଂ ପରିଚାଳନାରେ ଗ୍ରାମର ଭଦ୍ରଲୋକ ଓ ପ୍ରଧାନମାନେ କେହି କିଛି ଅର୍ଥ ସାହାଯ୍ୟ କରନ୍ତି ନାହିଁ । କିନ୍ତୁ ଅନେକ ଲୋକ ସ୍ତ୍ରୀ ଶିକ୍ଷା ପ୍ରତି ଖଡ୍ଗହସ୍ତ ପୁଣି ଅଚ୍ଛୁବ ଜାତିର ପିଲାଙ୍କୁ ଶିକ୍ଷା ଦେବାକୁ କେହି ରାଜି ନୁହନ୍ତି । ଗ୍ରାମ ଦେବୀ ବଡ଼ ରାଉଳ ଠାକୁରାଣୀ ମନ୍ଦିର ବେଢ଼ା ଭିତରେ ଏକ ଗୃହରେ ପୁଣି ମାଳଞ୍ଚି ଗୁମୁଡ଼ିଆ ଘରେ ପିଲାମାନେ ପଢ଼ାଶୁଣା କରନ୍ତି । ମନ୍ଦିର ବେଢ଼ା ଭିତରେ ଅଚ୍ଛୁବ ଜାତିର ପିଲାମାନେ ପ୍ରବେଶ କରି ପାରିବେ

ନାହିଁବୋଲି ଲୋକଙ୍କର ଖାଲି ଆପତ୍ତି । ଗ୍ରାମଦେବୀ ଠାକୁରାଣୀ ମନ୍ଦିର ଭିତରେ ପାଣ, ବାଉରୀ ଜାତିର ଛେଳି, ମେଣ୍ଢା, କୁକୁଡ଼ା ଇତ୍ୟାଦି ପଶୁହତ୍ୟା କରି ରକ୍ତ ମାଂସ ଓ ମଦରେ ଠାକୁରାଣୀଙ୍କ ପୂଜା ସେବା କରନ୍ତି, ଏଥିରେ ଗ୍ରାମ ଲୋକଙ୍କର କିଛି ଆପତ୍ତି ନ ଥାଏ ।

ଆମ୍ଭମାନଙ୍କ ମଧ୍ୟରେ ଯେପରି ଜାତିଭେଦ ଦେବ ଦେବୀଙ୍କ ମଧ୍ୟରେ ସେହିପରି ଜାତିଭେଦ । ବସ୍ତୁ ଶ୍ରେଣୀର ଦେବତା ଜଗନ୍ନାଥ, ଗୋପୀନାଥ ଇତ୍ୟାଦି ବ୍ରାହ୍ମଣ ଜାତୀୟ, ଯେହେତୁ ବ୍ରାହ୍ମଣମାନେ କେବଳ ଏମାନଙ୍କୁ ପୂଜାସେବା କରନ୍ତି । ଶିବ, ମହାଦେବ ଶୂଦ୍ର ଜାତୀୟ, ଯେହେତୁ ମାଳୀ ଓ ଗଉଡ଼ ନାମକ ଏକ ଶୂଦ୍ର ଜାତି ଶିବ ମନ୍ଦିରରେ ପୂଜାସେବା କରନ୍ତି । ପୁଣି ଗ୍ରାମଦେବୀ, ଠାକୁରାଣୀଙ୍କୁ ହାଡ଼ି ପାଣ ଆଦି ଅଛୁଆଁ ଜାତିର ଲୋକେ ମଦ କୁକୁଡ଼ା ନେଇ ପୂଜା କରନ୍ତି । ଏହି ହିସାବରେ ଠାକୁରାଣୀ ଅସ୍ପୃଶ୍ୟା । ତେବେ ଠାକୁରାଣୀ ମନ୍ଦିରରେ ନମ୍ର ଜାତିର ପିଲାମାନେ ପ୍ରବେଶ କଲେ କ୍ଷତି କଣ ? ସେ ଦେଇଁ ଶୁଏ ତାକୁ ଉଠାଇବ କଏ । ଯେ ବୁଝି ବୁଝେ ନାହିଁ କମ୍ବା ଯେ ନଦାମୂର୍ଖ ତାକୁ ବୁଝାଇବ କଏ ? ବ୍ରହ୍ମା ମଧ୍ୟ ପରାସ୍ତ ହେବେ । ଯାହାହେଉ ଲୋକମାନଙ୍କରେ ଉକ୍ତ ଆକ୍ଷେପ ପ୍ରତି ଭ୍ରୂକ୍ଷେପ ନକରି ପାଠଶାଳାଟି ଏକରକମର ପ୍ରାୟ ଦୁଇବର୍ଷ ଚଳିଲା । ଶିକ୍ଷକ ଛୁଟିରେ ଯାଇ ବହୁକାଳ ପର୍ଯ୍ୟନ୍ତ ଆଉ ଫେରି ନ

ଆସିବାରୁ ଅନ୍ୟ ଉପଯୁକ୍ତ ଶିକ୍ଷକ ଅଭାବରୁ ପାଠଶାଳାଟି ଭାଙ୍ଗିଗଲା ।

-O-

## ଅସ୍ପୃଶ୍ୟତା

ମହାତ୍ମା ଗାନ୍ଧିଙ୍କ ଇଚ୍ଛାନୁସାରେ ହିନ୍ଦୁ ସମାଜରୁ ଅସ୍ପୃଶ୍ୟତା ଉଠାଇଦେବା ଭାରତର ସ୍ୱରାଜ୍ୟ ପ୍ରାପ୍ତିର ଏକ ମୂଳ ସାଧନ ବୋଲି ଜାତୀୟ କଂଗ୍ରେସ ସଭା ଧାର୍ଯ୍ୟ କରିଛନ୍ତି । କଂଗ୍ରେସ ସଭାର ଏହି ନିର୍ଦ୍ଧାରଣ ହେବା ବହୁକାଳ ପୂର୍ବରୁ ହିନ୍ଦୁ ଜାତିର ଅସ୍ପୃଶ୍ୟତା ତଥା ଜନ୍ମଗତ ଜାତିଭେଦ, ସରକାର ଶାସନ ପ୍ରଣାଳୀ ଏବଂ କୋର୍ଟ କଚେରୀ ମାମଲା ମକଦ୍ଦମାରେ ମୋର ମନ ମାନେନାହିଁ । ତାପରେ ମହାତ୍ମାଙ୍କ ଆଦର୍ଶ ଉପଦେଶ ଗ୍ରହଣକରି ଅସ୍ପୃଶ୍ୟତା ଦୂରୀକରଣରେ ଅଗ୍ରସର ହେବା ଲାଗି ଅନେକ ସମୟରେ ମୋତେ ସାମାଜିକ ଯାତନା ଭୋଗ କରିବାକୁ ପଡ଼ିଥିଲା । ଦିନେ ଆମଗାଁ ଦଣ୍ଡାସୀ ଘରେ ଏକ ଭୋଜି ହେଉଥିଲା । ମୁଁ ସେତେବେଳେ ସେମାନଙ୍କ ଭୋଜି ଘରକୁ ଯାଇ ସେମାନଙ୍କ ମଧ୍ୟରେ ବସି, ସେମାନଙ୍କୁ ଛୁଇଁ ମଦ୍ୟପାନ ଓ ଗୋମାଂସ ଭକ୍ଷଣ ଛାଡ଼ିବା ପାଇଁ ସେମାନଙ୍କୁ ଉପଦେଶ ଦେଇଥିଲି ।

ସେମାନେ ମୋର ଉପଦେଶ ଗ୍ରହଣ କରି ସେଦିନ ମଦ୍ୟ ଫିଙ୍ଗି ଦେଇ ଗୋମାଂସ ପୋତି ପକାଇଥିଲେ । ମୁଁ ଦଣ୍ଡାସୀ ଘରକୁ ଯାଇ ଦଣ୍ଡାସୀ ମାନଙ୍କୁ ଛୁଇଁଲି ବୋଲି ଆମ ଭାଇମାନେ ମତେ ଜାତି ବାରଣ କରିବାକୁ ବସିଲେ ଏବଂ ଅନ୍ୟଲୋକଙ୍କୁ ପୁଣି ବନ୍ଧୁବାନ୍ଧବମାନଙ୍କୁ ଆମ ଘରକୁ ଆସିବାକୁ ନିଷେଧ କଲେ; କିନ୍ତୁ ଏ ନିଷେଧ ଟିକିପାରିଲା ନାହିଁ । କିଛିଦିନ ପରେ ସାମାଜିକ ଗୋଳମାଳ ସବୁ ପୂର୍ବପରି ଗଲା । ହାଡ଼ି, ପାଣ, ଦଣ୍ଡାସୀ ଆଦି ଅସ୍ପୃଶ୍ୟ ଜାତିର ଲୋକମାନଙ୍କୁ ମୁଁ କହେ, "ଯଦି ତୁମ୍ଭେମାନେ ମଦ୍ୟପାନ ପୁଣି ଗୋମାଂସ ଭକ୍ଷଣ କରିବ ନାହିଁ, ତେବେ ତୁମ୍ଭେ-ମାନେ ଆଉ ଅଛୁଆଁ ହୋଇ ରହିବ ନାହିଁ" । ତଥାପି ଚିରକାଳ ଅଭ୍ୟାସ ଏବଂ ବାସନାରୁ ଏହି କଥାରେ ସେମାନଙ୍କର ମହତ ବିଶ୍ୱାସ ହୋଇ ପାରେ ନାହିଁ । ଆମ୍ଭମାନଙ୍କୁ ଛୁଇଁ ଦେଲେ ପାପହେବ ବୋଲିସେମାନଙ୍କର ଏକ ଧାରଣା । ଦିନେ ଜଣେ ହାଡ଼ି ଲୋକ ଆମ୍ବ ଟିକେ ଆଣିଥିଲା । ମୁଁ ତାହା ହାତରୁ ଆମ୍ବଟା ନେବାକୁ କେତେ ଚେଷ୍ଟା କଲି; ତଥାପି ସେ ଲୋକଟା ଧରିଛୁଆଁ ଦେଲା ନାହିଁ । ମୁଁ ତାହା ପାଖକୁ ଗଲେ ସେ ଆଉ ଖଣ୍ଡେ ଦୂର ଚାଲିଯାଏ । ସେମାନଙ୍କର ଆତ୍ମ ସମ୍ମାନ ଜ୍ଞାନ ଜାତ ନହେବା ପର୍ଯ୍ୟନ୍ତ ପୁଣି ଆମ୍ଭମାନଙ୍କର ସେମାନଙ୍କ ପ୍ରତି ହେୟଜ୍ଞାନ ଦୂର ନହେବା ପର୍ଯ୍ୟନ୍ତ ଅସ୍ପୃଶ୍ୟତା ସମାଜରୁ ଯିବନାହିଁ । ଅତଏବ ସେମାନଙ୍କୁ ଶିକ୍ଷା ଏବଂ ସତ୍‌ସଙ୍ଗ ଯୋଗାଇ ଦେବା ଆବଶ୍ୟକ ।

ସ୍ୱଧର୍ମ ବା ମାନବ ଧର୍ମରକ୍ଷା ସକାଶେ ଅସ୍ପୃଶ୍ୟତା ନିବାରଣ ଯେପରି ଆବଶ୍ୟକ, ଆର୍ଥିକ ସ୍ୱାଧୀନତା ଏବଂ ସ୍ୱରାଜ୍ୟ ପ୍ରାପ୍ତି

ସାଧନ ସକାଶେ ଅରଟରେ ସୂତାକାଟି ନେତ୍ରରେ ଖଦଡବୁଣି ପିନ୍ଧିବା ସେମାନଙ୍କର ଏକାନ୍ତ ଆବଶ୍ୟକ । ଅସହଯୋଗ ଆନ୍ଦୋଳନ ବୃଦ୍ଧି ଦିନଠାରୁ ଯୋଗଦେବା ଦିନୁ ସ୍ଥୂଳ ହେଉ ବା ମୋଟ ହେଉ ସ୍ୱଦେଶୀ ଖଦଡ ପିନ୍ଧିବା ହିଁ ମୋହର ବ୍ରତ ଏବଂ ଦୃଢ଼ ପ୍ରତିଜ୍ଞା । ମୁଁ ଦୁଇଗୋଟି ଅରଟ, ଦୁଇଟା କପାଖାଇ ତିଆର କରିଥିଲି । ସେତିକି ମୂଲ୍ୟରେ ଲୋକଙ୍କୁ ଅରଟ ଦେଲେହେଁ ଅନେକ ଲୋକଙ୍କର ତତ୍ପ୍ରତି ଆଗ୍ରହ ଦେଖାଯାଉ ନଥିଲା । କୁଟି ଖାଇବା ଏବଂ କାଟି ପିନ୍ଧିବା ପ୍ରତି ଲୋକଙ୍କର ଆସ୍ଥା ନାହିଁ । ଲୋକେ ସ୍ୱାଧୀନ-ଭାବରେ ଦୁଃଖ କଷ୍ଟ ସହ୍ୟ କରିବାକୁ ବିମୁଖ କିନ୍ତୁ ପରାଧୀନତାର ଅଧିକାରୀ ହେବାକୁ ଉଦ୍ବାନ୍ତ । ଆମଘର ପୂଜାରୀ, ରୁଦ୍ରର ସୂତା କାଟନ୍ତି । ଉଣକା ଗୋପାଳ ମଧ୍ୟ ସୂତା କାଟେ । ମୁଁ ନିଜେ ଟିକେ ଟିକେ ସୂତା କାଟୁଥାଏ । କିନ୍ତୁ ସାଙ୍ଗ ଦେଶୀ ଲୋକେ ଉପଦେଶ ବା ଆଦର୍ଶ ଗ୍ରହଣ କରନ୍ତି ନାହିଁ । ଉଣକା ମଧ୍ୟ ପରକଥା ଶୁଣି ସୂତାକଟା ଛାଡ଼ି ବସିଲା ପୁଣି ମୋଟା ଖଦଡ ପିନ୍ଧିବାକୁ ରାଜି ହେଲା ନାହିଁ ।

## ପୋଷ୍ୟପୁତ୍ର

ମୋର ପୁତ୍ର ସନ୍ତାନ ନଥିଲେ । ପୋଷ୍ୟ ପୁତ୍ର କରିବା ମୋର ଇଚ୍ଛା ନଥାଏ । ପିଣ୍ଡପ୍ରାପ୍ତି ଏବଂ ବଂଶ ରକ୍ଷା କରିବା

ପାଇଁ ପୋଷ୍ୟପୁତ୍ର କରିବାକୁ ହେବବୋଲି ମତେ ଅନେକ ଅନୁରୋଧ କରନ୍ତି । କିନ୍ତୁ ପୋଷ୍ୟପୁତ୍ରର ଆବଶ୍ୟକତା ମୁଁ ଦେଖେନାହିଁ । ଉକ୍ତ ପିଣ୍ଡରେ ମୋର ବିଶ୍ୱାସ ନଥାଏ । ସମାଜରେ ସୁନାମ ରକ୍ଷା କରିବା ସକାଶେ ଅନ୍ୟ ଅନେକ ପ୍ରକାର ମାର୍ଗ ଅଛି । ସତ୍ ପାତ୍ରରେ ଦେଲେ, ଲୋକ ଉପକାର କଲେ, ବିଦ୍ୟା ଶିକ୍ଷା ଦେଲେ, ପୁସ୍ତକ ଲେଖି ପ୍ରକାଶ କଲେ ପୁତ୍ର ଅପେକ୍ଷା ଶତଗୁଣ ଅଧିକ ସୁନାମ ରକ୍ଷା କରିଯାଇ ପାରେ । ଅବଶ୍ୟ ଜାଗିର ସମ୍ପତ୍ତିର ପରିଚାଳନା ଓ ସୁରକ୍ଷା ସକାଶେ ଉତ୍ତରାଧିକାରୀ ଆବଶ୍ୟକ । ସୁତରାଂ କ୍ଷତ୍ରିୟ ରାଜାମାନଙ୍କର ଜ୍ୟେଷ୍ଠ ପୁତ୍ର କରିବା ବାଞ୍ଛନୀୟ ହୋଇପାରେ । କିନ୍ତୁ ଗରିବ ବ୍ରାହ୍ମଣ ଯାହାରି ତପସ୍ୟା ବା କଷ୍ଟଲବ୍ଧ ନାହିଁ ସମ୍ପତ୍ତି, ତାହା ପକ୍ଷରେ ପୋଷ୍ୟପୁତ୍ର ଗ୍ରହଣ ବିଡ଼ମ୍ବନା ମାତ୍ର, ଏହାହିଁ ମୋର ଧାରଣା ଥିଲା । ଆମ-ଘରେ ରହି ଗୃହର ନିଜ କାର୍ଯ୍ୟକର ଆମ ଅନ୍ତେ ଆମର ଥିବା ଘର ଓ ବିଲ, ଜମି, ବାଡ଼ି ଭୋଗ କରିବା ନିମନ୍ତେ ଭଣଜା ଗୋପାଳ ( ପାଣ୍ଡିଆ ଗ୍ରାମ ନିବାସୀ ରାମଚନ୍ଦ୍ର ପାଢ଼ୀଙ୍କ ପୁତ୍ର )କୁ ଆଣି ମୋ ପାଖରେ ରଖିଲି । କିନ୍ତୁ ସେ ମୋର ଶିକ୍ଷା ଓ ଆଦର୍ଶ ଗ୍ରହଣ ନକରି ଭୋଗବିଳାସରେ ମାତିଲା । ପ୍ରାୟ ଦୁଇ ବର୍ଷ ଆମଘରେ ରହିଲା । ଗୋସେବା, ସନ୍ତାନଟା ବଗିଚାରେ କୃଷିକାମ ଇତ୍ୟାଦି ପରିଶ୍ରମ କରିବାକୁ ବିମୁଖ ହୋଇ ୧୯୨୩ ଜୁନ ତା ୨୫ ରାତ୍ରରେ ନିଜଗ୍ରାମ ପାଣ୍ଡିଆ ବାହାରି ଗଲା । ହରିବନ୍ଧୁ ନାମକ ଆଉ ଏକ ଭଣଜାକୁ ମାସିକ ୧୦/୧୫ ବ୍ୟୟ

କରି ଦଶବର୍ଷ ପର୍ଯ୍ୟନ୍ତ ଇଂରାଜୀ ଶିକ୍ଷା ଦିଆଇଲି । ସେ ମଧ୍ୟ ମୋ ର ନିବାରଣ ନ ମାନି ବିଦ୍ୟାଶିକ୍ଷା ଶେଷ ନହେଉଣୁ ୨୦/୨୨ ବର୍ଷରେ ବିବାହ କଲା । ବିବାହ ହେବାରୁ ମୁଁ ଆଉ ତାହାର ବିଦ୍ୟାଶିକ୍ଷା ବ୍ୟୟଭାର ଗ୍ରହଣ କଲିନାହିଁ । ସେ ସମୟକୁ ଅସହଯୋଗ ଆନ୍ଦୋଳନ ଆରମ୍ଭ ହେଲା । ସ୍କୁଲ ଶିକ୍ଷା ତ୍ୟାଗ କରିବାକୁ ହେଲା । ତାପରେ ସେ ମୋ କଥା ନମାନି ସରକାରୀ ଚାକିରୀ ଅନ୍ୱେଷଣରେ ବୁଲିଲା ଏବଂ କିଛିକାଳ କୌଣସି ସ୍କୁଲରେ ଶିକ୍ଷକତା କରି ବିବାହର ଦ୍ୱିତୀୟ ବର୍ଷରେ ମରିଗଲା । ଭଗବାନଙ୍କ ଇଚ୍ଛା ଓ ନିୟମ କିଏ ଲଙ୍ଘି ପାରେ ? ଆଜକାଲି ବାଳକ ବାଳିକା ମାନେ ବିଦ୍ୟାଶିକ୍ଷା କମ୍ଭା ଖେଳାବୁଲା ଛାଡ଼ି ପିଲାଦିନେ କାମିନୀ କାଞ୍ଚନ ପ୍ରଲୋଭନରେ ପଡ଼ି ପଥ ଭ୍ରଷ୍ଟ ହୁଅନ୍ତି, ଭାବି ଜୀବନ କଳଙ୍କିତ କରନ୍ତି । 'ଗ୍ରେଟ ହେଉ ବା ମୋଟ ହେଉ ସ୍ୱଦେଶୀ ଖଦି ପିନ୍ଧି ଗାଈକୁ ନିଜେ ଘାସପାଣି ଦିଅ, ପୁଣି ବଗିଚାରେ କାମକର, ଏହି କଥା କହିବାରୁ ଆମ ଭଣଜାମାନେ ମୋ ପାଖରୁ ବାହାରି ଯାଆନ୍ତି । ପୁଣି ରୟତମାନଙ୍କୁ ପୀଡା ପୀଡ଼ିକରି ଧନ ଶୋଷଣ ନକରିବା ଯୋଗୁଁ ଆମ ପୁଅ ପ୍ରଭୁମାନେ ଆମ୍ଭ ପ୍ରତି ଖଡ଼ଗ୍‌ହସ୍ତ ହୁଅନ୍ତି ।

## ଗୋରକ୍ଷାଶ୍ରମ

ଗୋବ୍ରାହ୍ମଣ ସେବା ଶୁଶ୍ରୂଷା କରିବା ପ୍ରତ୍ୟେକ ମନୁଷ୍ୟର ପ୍ରଧାନ କର୍ତ୍ତବ୍ୟ । ମୋର ସର୍ବଦା ଏହି ଭାବ ଜାଗ୍ରତ ଥାଏ ।

କିନ୍ତୁ ଗୋ ବ୍ରାହ୍ମଣ ପ୍ରଧାନ ଭାରତ ଦେଶରେ ଆଜି ବ୍ରାହ୍ମଣ ନାହାନ୍ତି ବା ଅତ୍ୟନ୍ତ ବିରଳ ବୋଲିବାକୁ ହେବ । ସେହି ଗାଈ ଅଛନ୍ତି, କିନ୍ତୁ ସେବା ଶୁଶ୍ରୂଷା ଅଭାବରୁ ଅତ୍ୟନ୍ତ କ୍ଷୀଣ, ଦୁର୍ବଳ ଏବଂ ଦୁଗ୍ଧ ଦାନରେ ଅକ୍ଷମ । ଗୋ ଜାତିର ଏହି ଦୁର୍ଦ୍ଦଶାରୁ କୃଷି ପ୍ରଧାନ ଭାରତ ଦେଶର ଆଜି ଏହି ଅବନତି । ଟେକରଡା ଗ୍ରାମ ନିକଟ ସରକାର ଓଡାଠା ହର୍ମୀଟରେ ସରକାରଙ୍କଠାରୁ ୯ ଏକର ଭୂମି ଗୋରକ୍ଷାଶ୍ରମ ସ୍ଥାପନ ସକାଶେ ପାଇବାକୁ ହେଲା । ୧୯୨୩ ମାର୍ଚ୍ଚ ମାସ ୫ ତାରିଖ ବାଣଚୁମ୍ବୁ ଗ୍ରାମରେ ଆମ୍ଭର ଥିବା ଜଗ-ଇତି ଭୂମି ୨୫ ଏକର, ଯାହାର ବାର୍ଷିକ ଆୟ ପ୍ରାୟ ୪୦୦ ଟଙ୍କା, ଉକ୍ତ ଭୂମି ଗୋରକ୍ଷାଶ୍ରମ ସକାଶେ ପ୍ରଦାନ କଲେ । ସେଥି ସକାଶେ ନିରୂପଣ ପତ୍ର ରେଜେଷ୍ଟ୍ରି କରି ଦିଆଗଲା । ସବୁ ଅନୁଷ୍ଠାନ ସକାଶେ ମନ, ଧନ ଉଭୟ ଆବଶ୍ୟକ ।

ମଞ୍ଜୁଷାର ଜୟମଙ୍ଗଳ ରଥଙ୍କୁ ଚରିତ୍ରବାନ ସଂଯମୀ ଏବଂ ଦେଶ ହିତୈଷୀ ବୋଲି ମୁଁ ଜାଣେ । ଏହାଙ୍କ ପ୍ରବର୍ତ୍ତନାରେ ଗୋରକ୍ଷାଶ୍ରମ ପାଇଁ ଭୂମି ଦାନପତ୍ର ରେଜେଷ୍ଟ୍ରି କରି ଦିଆଗଲା । କିନ୍ତୁ ଜୟମଙ୍ଗଳ ଓ ଯେଉଁମାନେ ଗୋରକ୍ଷାଶ୍ରମ ସ୍ଥାପନରେ ସାହାଯ୍ୟ ଦାନର ପ୍ରତିଜ୍ଞା କରିଥିଲେ, ଆଜି କାର୍ଯ୍ୟାରମ୍ଭ ବେଳେ ଅନ୍ୟାନ୍ୟ କାର୍ଯ୍ୟରେ ବ୍ୟାପୃତ ରହି କିମ୍ବା ମୋର ଦାନରେ ବିଶ୍ୱାସ ନକରି ଉକ୍ତ ଗୋରକ୍ଷାଶ୍ରମ ନିର୍ମାଣରେ ଯୋଗ ଦେଇପାରି ନାହାନ୍ତି । ଯାହାହେଉ ଭଗବାନଙ୍କ ଉପରେ ନିର୍ଭର କରି ୧୯୨୩ ସାଲ ମଇ ମାସର କାର୍ଯ୍ୟ ଆରମ୍ଭ କରାଗଲା । ଗୁଣ୍ଡିଚେଲୀ

ନିବାସୀ ଗୋବିନ୍ଦ ପଣ୍ଡାଙ୍କୁ ମାସିକ ୧୦ଟଙ୍କା ବେତନରେ ନିଯୁକ୍ତ କରି ଉକ୍ତ ଆଶ୍ରମ ଯାଗା ଭିତରେ ଗୋଟିଏ କୂପ ଖନନ କରା-ଗଲା । ୧୭ ହାତରେ ଜଳ ଦେଖିଲା । ୨୧ ହାତ ଖୋଳାଗଲା । ଆଜକାଲି କୌଣସି କାର୍ଯ୍ୟ ନିର୍ବାହ ସକାଶେ ସୁଦକ୍ଷ ଏବଂ ବିଶ୍ୱାସ କର୍ମକୁଶଳ ଲୋକ ମିଳନ୍ତି ନାହିଁ, ଦାୟିତ୍ୱ କର୍ତ୍ତବ୍ୟ ଜ୍ଞାନଯୁକ୍ତ ଲୋକ ମିଳନ୍ତି ନାହିଁ । ସମସ୍ତେ ଧନାଶୀ, ବହୁଲୋକ ପରଧନ ଅପହରଣ କରିବାକୁ ପୁଣି ଧର୍ମ କାର୍ଯ୍ୟରୁ ମଧ୍ୟ ଧନ ଅପହରଣ କରି ନେବାକୁ ଭିଲେମାତ୍ର ସଙ୍କୁଚିତ ହୁଅନ୍ତି ନାହିଁ । ଅତଏବ ଧନ ଥିଲେ ମଧ୍ୟ ମନର ଅଭାବରୁ ପୁଣି ମନ ଓ ଧନ ଥିଲେ ମଧ୍ୟ ଜନ ଅଭାବରୁ ଅନେକ ସତ୍‌କାର୍ଯ୍ୟ କରାଯାଇ ପାରେ ନାହିଁ ।

## ମୋର ଧର୍ମ ଧାରଣା

ମୋର ଧର୍ମ ଧାରଣା ସ୍ଥୂଳତଃ ତିନି ଭାଗରେ ବିଭକ୍ତ କରାଯାଇପାରେ । ମୁଁ ପ୍ରାୟ ୫ ବର୍ଷ ବୟସରେ ସରକାରୀ ସ୍କୁଲରେ ଇଂରାଜୀ ଶିକ୍ଷା ଆରମ୍ଭ କଲି । ତତ୍‌ପୂର୍ବରୁ ମାତୃଭାଷାରେ ଲେଖା ପଢ଼ା ଓ ଗଣିତ ସଂସ୍କୃତ ଭାଷାରୁ କିଛି ଅଭିଧାନ ପୁଣି ସନ୍ଧ୍ୟା, ପୂଜା, ସୂକ୍ତ, ସ୍ତୋତ୍ର ଇତ୍ୟାଦି କେତେକ କର୍ମ କର୍ମାଣୀ ପାଠ ପଢ଼ିଥିଲି । ୧୨ ବର୍ଷ ଠାରୁ ୨୦ ବର୍ଷ ପର୍ଯ୍ୟନ୍ତ ପ୍ରଚଳିତ ହିନ୍ଦୁ ଧର୍ମରେ ଅର୍ଥାତ୍ ପ୍ରତିମା ପୂଜାରେ ପୁରୁଣା କଳ୍ପନାରେ, ଜାତି ଭେଦରେ, ଅର୍ଥାତ୍ ଜନ୍ମ ବ୍ରାହ୍ମଣ ବା ବ୍ରାହ୍ମଣନାମାମାନଙ୍କ

ଆଧିପତ୍ୟରେ ଏବଂ ସେମାନଙ୍କ ଦାନ, ପ୍ରାୟଶ୍ଚିତ୍ତ ସୂତ୍ର, ସ୍ତୋତ୍ର ଶୁଦ୍ଧ ଶ୍ରାଦ୍ଧ ଇତ୍ୟାଦି କର୍ମ କାଣ୍ଡରେ ପୂର୍ଣ୍ଣ ବିଶ୍ୱାସ, ଶ୍ରଦ୍ଧା ଓ ଭକ୍ତି କମିବାକୁ ଲାଗିଲା । ୨୦ ବର୍ଷଠାରୁ ୪୫ ବର୍ଷ ପର୍ଯ୍ୟନ୍ତ ମୋର ଧର୍ମ ଧାରଣାର ଦ୍ୱିତୀୟ ଅବସ୍ଥା ବୋଲିବାକୁ ହେବ । ଏହି ସମୟରେ ରାଜା ରାମମୋହନ ରାୟଙ୍କ ବ୍ରାହ୍ମ ଧର୍ମ ପ୍ରତି ମନ ଆକୃଷ୍ଟ ହେଲା । ଏହି ସମୟରେ ବ୍ରାହ୍ମଣ ଆଦି ଜାତିର ଜାତି ଭେଦ, ଦେବ ଦେବୀ ନାମରେ ମୂର୍ତ୍ତି ପୂଜା, ଖାଦ୍ୟଖେଦ୍ୟରେ ଜାତିଗତ ପ୍ରଭେଦ, ଆମିଷ, ନିରାମିଷ ଆଦି ଭେଦ ବିଚାର, ମନୁଷ୍ୟ ମନୁଷ୍ୟ ମଧ୍ୟରେ ସ୍ପର୍ଶ ବା ଦୃଷ୍ଟି ଦୋଷ, ଶୌଚ୍ଚ ଶୌଚ, ଶୁଦ୍ଧ, ଶ୍ରାଦ୍ଧ ଇତ୍ୟାଦି କର୍ମକାଣ୍ଡ ଏବଂ ବେଦଶାସ୍ତ୍ର ଏ ସବୁଥିରେ ଆଉ କୌଣସି ବିଶ୍ୱାସ ବା ଆସ୍ଥା ରହିଲା ନାହିଁ । ଏହିସବୁ ଧର୍ମ କର୍ମକାଣ୍ଡ କେବଳ ମୂଢ଼ ସ୍ୱାର୍ଥାନ୍ଧ, ଅତ୍ୟାଗ୍ରହୀ ବ୍ରାହ୍ମଣ ଜାତିର କପୋଳ କଳ୍ପନା ଜ୍ଞାନ ହେଲା । ଏହି କାଳରେ ଶେଷ ଭାଗରେ ବ୍ରାହ୍ମଣ ଧର୍ମଠାରୁ ବୌଦ୍ଧଧର୍ମ ପ୍ରତି ମନ ଟିକିଏ ବଳିବାକୁ ଲାଗିଲା । ମହାତ୍ମା ବୁଦ୍ଧଦେବଙ୍କ ତପସ୍ୟା, ସ୍ୱାର୍ଥତ୍ୟାଗ ଶିକ୍ଷା ଏବଂ ଆଦର୍ଶରେ କାହାର ମନ ବା ଆକୃଷ୍ଟ ନହେବ ? ଯାହାହେଉ ମୋର ଧର୍ମଧାରଣାର ଏହି ଅବସ୍ଥାକୁ ଉଚ୍ଛୃଙ୍ଖଳ କୁହାଯାଇ ଥାଏ । ଆସିଷ୍ଟାଣ୍ଟ ସବ୍ ରେଜିଷ୍ଟ୍ରାର ଥିବାବେଳେ ଲାଲ ଲଜପତି ରାୟଙ୍କ ଆର୍ଯ୍ୟଧର୍ମ 'ପୁସ୍ତକ ଏବଂ ମହର୍ଷି ଦୟାନନ୍ଦ' 'ସତ୍ୟାର୍ଥ ପ୍ରକାଶଙ୍କ' ପାଠ କରି ଆର୍ଯ୍ୟଧର୍ମ ପ୍ରତି ମନ ଏକା ବେଳକେ ବଦଳିଗଲା ।

# ଆର୍ଯ୍ୟଧର୍ମ

ଆର୍ଯ୍ୟଧର୍ମ ହିଁ ଭାରତର ମୂଳ ପ୍ରାଚୀନ ସନାତନ ବୈଦିକ ଧର୍ମ । ଏକା ଭାରତ କାହିଁକି ସମଗ୍ର ଜଗତର ଧର୍ମ ବୈଦିକ ଧର୍ମ ଥିଲା । ସେହି ଧର୍ମହିଁ ସମସ୍ତ ଜଗତରେ ପୁନେ ପ୍ରଚାରିତ ହେବ । ଏହି ଧାରଣା ମୋ ମନରେ ଦିନକୁ ଦିନ ଦୃଢ଼ତର ହେବାକୁ ଲାଗିଲା, ବେଦକୁ ଅଭ୍ରାନ୍ତ ସତ୍ୟ ଈଶ୍ୱରବାଣୀ ବୋଲି ଗ୍ରହଣ କରିବାକୁ ହେଲା । ମୂର୍ତ୍ତିପୂଜା, ମୃତ ଶ୍ରାଦ୍ଧ ବେଦ ବିରୁଦ୍ଧ କର୍ମ-କାଣ୍ଡ, ଧର୍ମଗତ ଜାତିଭେଦ, ସ୍ପୃଶ୍ୟାସ୍ପୃଶ୍ୟ ବିଚାର ଇତ୍ୟାଦି ଛାଡିବାକୁ ହେଲା । କେବଳ ଗୁଣକର୍ମ ଓ ସ୍ୱଭାବାନୁସାରେ ବର୍ଣ୍ଣ ଚତୁଷ୍ଟୟ ମାନିବାକୁ ହେଲା । ଆମିଷ ଭକ୍ଷଣ ଏକବାରେ ପରି-ତ୍ୟାଗ କରିବାକୁ ହେଲା । ଏହି ସମୟରେ ମୁଁ ଆର୍ଯ୍ୟଧର୍ମ, ଗୃହା-ଶ୍ରମ ଏବଂ ସତ୍ୟାର୍ଥ ପ୍ରକାଶର ଅନୁବାଦ ଲେଖିଥିଲି । ମୋର ନୈତିକ ଜୀବନ ଭିନ୍ନ ପ୍ରକାର ଗଢ଼ିଲା । ନିତ୍ୟ ପଞ୍ଚ ମହାଯଜ୍ଞ କରିବାକୁ ହେଲା ବ୍ରହ୍ମଯଜ୍ଞ ବା ସାନ୍ଧ୍ୟୋପାସନା, ଦେବଯଜ୍ଞ ବା ହୋମ, ପିତୃ ଯଜ୍ଞ, ପିତୃସେବା ଓ ତର୍ପଣ, ନୃଯଜ୍ଞ ବା ଅତିଥି, ସତ୍କାର, ବଳିବୈଶ୍ୟ ଦେବୋ ଗୃହପାଳିତ ପଶୁପକ୍ଷୀ ଇତ୍ୟାଦିଙ୍କର ସେବା ଶୁଶ୍ରୂଷା । ମୁଁ ନିତ୍ୟ ପ୍ରାତଃ ସ୍ନାନ କଲି । ସୂର୍ଯ୍ୟୋଦୟ ପୂର୍ବରୁ ସ୍ନାନ ସନ୍ଧ୍ୟା ନକରି କୌଣସି କାର୍ଯ୍ୟରେ ଲାଗେନାହିଁ । ମୁଁ ଯଦି ବାହାରି ଚୁଇଁଲି ଛୁଆଁ ଲୁଗା ପିନ୍ଧି ଖାଇଲି ତେବେ ମୋର

ପଞ୍ଚ ମହାଯଜ୍ଞାନୁଷ୍ଠାନ, ନବମିଶନ୍ଧାର ଇତ୍ୟାଦି ନିଷ୍ଫଳ ହେଲା ବୋଲି କୁସଂସ୍କାରୀ ସାମାଜିକମାନେ ଆକ୍ଷେପ କରିଥାନ୍ତି । କିନ୍ତୁ ସେହି ଆକ୍ଷେପ ପ୍ରତି ମୁଁ ଭ୍ରୂକ୍ଷେପ କରେନାହିଁ । ଏହି ସମୟରେ ମୁଁ ବୈଦ୍ୟ ଡାକ୍ତରଙ୍କୁ ଅନୁସରଣ କରି ସମସ୍ତ ପ୍ରକାର ଔଷଧ ସେବନ ଛାଡ଼ି ଜର୍ମାନୀ ପଣ୍ଡିତଙ୍କ କୂନ ଚିକିତ୍ସା ଗ୍ରହଣ କଲି । ଏହି ଜଳବାୟୁ ଓ ଆଲୋକର ଚିକିତ୍ସାରେ ମୁଁ ଅତ୍ୟନ୍ତ କ୍ଷୀଣକାୟ ହୋଇ ପଡ଼ିଥିଲେ ହେଁ ଖୁବ୍ ସବଳ ଥିଲି । ବାଟ ଦୁଇକୋଷ ଚାଲିବାକୁ ହେଲେ ମୋର ଯାନବାହାନ ଲୋଡ଼ା ନଥିଲା । ଏବେ ସର୍ବଦା ପଦ ବ୍ରଜରେ ଅକ୍ଲେଶରେ ଗମନକରେ । ଢନକର ଛଡାବର ଠାରୁ ଆସିକା ପର୍ଯ୍ୟନ୍ତ ଅର୍ଥାତ୍ ୨୦ ମାଇଲ ରାସ୍ତା ୫ ଘଣ୍ଟାରେ ଯାଇପାରିଥିଲି । ଏହି ଚିକିତ୍ସାରେ ସ୍ୱଳ୍ପାହାର ଏବଂ ବିଶେଷରେ ଫଳ ଆହାର କରିବାକୁ ହୁଏ । ଏହି ଚିକିତ୍ସା ବ୍ରହ୍ମ-ଚର୍ଯ୍ୟର ଅତ୍ୟନ୍ତ ଅନୁକୂଳ ହୋଇଥାଏ । ଅତିରିକ୍ତ ପରିମାଣର ବାଷ୍ପ ବା ହାଇଡ୍ରୋ ପ୍ରୟୋଗ ହେତୁ କିଛିକାଳ ମୋ କର୍ଣ୍ଣରେ ବଧିରତା ଆସିଥିଲା ।

## ଆତ୍ମ ପରିଚୟ

କୌଣସି ଲୋକର ପରିଚୟ ପାଇବାକୁ ହେଲେ, କେବଳ ତାହାଙ୍କ ଲେଖାରୁ ତାହାଙ୍କର ପରିଚୟ ମିଳପାରେ ନାହିଁ ।

ତାହାଙ୍କର ଆଚରଣ ଓ ମନୋଗତ ଭାବ ବୁଝିବାକୁ ହେବ । ଆଚରଣ ସମ୍ବନ୍ଧରେ ଯେଉଁ ଅନିବାର୍ଯ୍ୟ ପ୍ରତିବନ୍ଧକ ଥାଏ, ତହିଁର ମଧ୍ୟ ସମାଲୋଚନା କରିବାକୁ ହେବ । ତୁମର ସଙ୍ଗୀ ଲୋକମାନେ ଜଣାଗଲେ, ତୁମେ କି ପ୍ରକାର ଲୋକ ଚହ୍ନାଯାଇ ପାରିବ । ଏହି ନିୟମ ସବୁବେଳେ ଠିକ ନୁହେଁ । ଭାଇ, ଭଉଣୀ, ପୁଅ, ପୁତୁରା, ସମ୍ବନ୍ଧୀ, ଶ୍ୱଶୁର ଇତ୍ୟାଦି ସନ୍ନିକଟ ବନ୍ଧୁମାନେ ସଙ୍ଗୀ ଲୋକ । ଏମାନଙ୍କ କଥା ଛାଡ଼, ନିଜ ଭାର୍ଯ୍ୟା ଯାହାକୁ ଅର୍ଦ୍ଧାଙ୍ଗିନୀ କହନ୍ତି, ତାହାଠାରୁ ଅଧିକ ସଙ୍ଗୀ ଆଉ କିଏ ଅଛି ? ତଥାପି ହେଲେ ପତ୍ନୀ ମଧ୍ୟ ପତିର ସମ୍ପୂର୍ଣ୍ଣ ବିରୋଧାଚାରିଣୀ ହୁଏ । ସ୍ତ୍ରୀମାନଙ୍କର ନାକ, କାନ ଫୋଡ଼ି ଏତେ ଗୁଡ଼ାଏ ଅଳଙ୍କାର ଭରି ହେବା ପୁଣି ଗୋଡ଼ରେ ଖଡ଼ୁ, ବଳା ଇତ୍ୟାଦି ଭାରବହି ବାନ୍ଧିଛନ୍ଦି ହୋଇ ରହିବା, ଗୁରୁଜନ ଓ ଆତ୍ମୀୟ ଲୋକମାନଙ୍କ ସେବା ସତ୍କାର ନକରି ପରଦା ଜନ୍ତା ଭିତରେ ମୂଷାପରି ଆବଦ୍ଧ ରହିବା ଲେଖାପଢ଼ା କିଛି ନକରିବା ଇତ୍ୟାଦି ପ୍ରଥାକୁ ମୁଁ କଦାପି ପସନ୍ଦ କରେନାହିଁ । ତଥାପି ମୋର ସ୍ତ୍ରୀ ନିରକ୍ଷର, ମୂର୍ଖା, ନାକ ଫୋଡ଼ି କାନ ବିନ୍ଧି, ତହିଁରେ କେତେକ ପ୍ରକାର ଅଳଙ୍କାର ଧରିଛନ୍ତି । ହାତରେ ଖଡ଼ୁ, ଗୁଞ୍ଜିର, ଗୋଡ଼ରେ ବଳା ପାହୁଡ଼ ଇତ୍ୟାଦିରେ ଦଶ ଶାଂକୁଳୀ ପଡ଼ିଛନ୍ତି । ବୁଢ଼ୀ ଆସି ହେଲେଣି, ଅଳଙ୍କାର ମୋହ ଛାଡ଼ିପାରୁ ନାହାନ୍ତି । ନାମରେ ମାତ୍ର ମୋର ସହଧର୍ମିଣୀ, କିନ୍ତୁ ବାସ୍ତବିକ ସ୍ୱାମୀ ଧର୍ମ ବିରୋଧୀ । ମୋର ଜୀବନଯାକ କେତେ

କୁହାଯୋଗ୍ଯ ଦେଖାଶିଖା ଇତ୍ୟାଦି କଲି କିନ୍ତୁ ବାହ୍ୟ ବେଶ ଭୂଷାରେ କିମ୍ବା ଆନ୍ତରିକ ଭାବ ବିଶ୍ୱାସରେ ଡାହିଁ କିଛି ପରିବର୍ତ୍ତନ ଦେଖାଗଲା ନାହିଁ । ପରବର୍ତ୍ତୀ ଜୀବନରେ ଏହି ସାଧନାର ସଫଳ ହେବ ଘଟ ।

ଆମ ଭଉଣୀକୁ ନିଜ ଘରକୁ ନେଇ ପାଖରେ ରଖିଲି, ଆଦର୍ଶ ଶିକ୍ଷା ଦେଲି । ସୂଚୀକର୍ମ ଜାଣିଥିଲେ ହେଁ ସେ ଅର୍ଥ ଧରିଲେ ନାହିଁ । ସ୍ୱଦେଶୀ ଖଦି ଛାଡ଼ି ବିଦେଶୀ କଳ ଲୁଗା ପୋଷାକରେ ବିଭୂଷିତ ହେଲେ । କିଏ ବା ଗୁରୁ ବା କାହିଁକି କଥା ଶୁଣିବେ ? ମୁଁ ଯେତେ ଶାନ୍ତି ଓ ପଞ୍ଚାୟତ ପାଇଁ ଥାଏ ସେ ସେତେ ମାଲି ମକଦ୍ଦମାର ମାତ୍ରା ବଢ଼ାଇବାରେ ଚେଷ୍ଟା କରୁଥାନ୍ତି ।

ଯେତେବେଳେ ମୁଁ ଆମ ଛତାବରଠାରୁ ଆସିବା ପର୍ଯ୍ୟନ୍ତ ପ୍ରାୟ ୨୦ ମାଇଲ ରାସ୍ତା ଚାଲିଗଲି । ଓକିଲ ଭାଇ ବସୁସ୍ଥାନ ତ ହୋଇ ମତେ ନେଇ ତାଙ୍କ ମହକିଲ ମାନଙ୍କୁ ଦେଖାଇ କହୁଛନ୍ତି- ପଚ୍ଛୁର ଆମ ଭାଇ କମିଭ ଅର୍ଥାତ୍ କେଉଁ ଯାନରେ ଆସିଛନ୍ତି । ସେତେବେଳେ ମୁଁ କହିଥିଲି ଯେ ମୁଁ ଦୁଇଖଣ୍ଡ ଦଗୋଡ଼ିଆ ଗାଡ଼ି କରିଥିଲି । ଖଣ୍ଡିକରେ ମୁଁ ବସିଥିଲି, ଅନ୍ୟଟିରେ ମୋର ସାମାନ ରଖାଯାଇଥିଲା ମୁଁ ନିଜେ ମୋର ଖଣ୍ଡେ ଦଗୋଡ଼ିଆ ଗାଡ଼ି ଅନ୍ୟ ଗାଡ଼ିଟି ମୋର ପୂଜାଘର ଚକର । ଆମ ଭାଇମାନେ ନିଜର ହେଉ

ବା ପରିଚ ଦେଇ ପଡ଼ନ୍ତି ମୋଟର, ଘୋଡ଼ା ବା ବଳଦ ଗାଡ଼ି ନ ହେଲେ ପହଞ୍ଚି ହେବେ ନାହିଁ । ମୋର ଏହି ଆତ୍ମୀୟ ବା ରକ୍ତ ସମ୍ବନ୍ଧୀ ମାନଙ୍କୁ ଦେଖିଶୁଣି ପାଠକେ ଭଲ କହନ୍ତୁ ମୋର ସ୍ୱଭାବ ଚରିତ୍ର ଓ ଗୁଣ କର୍ମର କି ପରିଚୟ ପାଇ ପାରିବେ ?

ସେଦିନ ମୋର ପୁଅ ଯାତ୍ରା ବେଳେ କୋଦଳା ନିକଟରେ ଟଙ୍ଗିକୋଟ ଏଷ୍ଟେଟ ଅଫିସର ତିନିଜଣ କର୍ମଚାରୀ ମତେ ଦେଖିଥିଲେ । ସେମାନେ ତେଜସ୍କର ଦେଖା ଯାଉଥିଲେ କିନ୍ତୁ କୁଜ୍ଝଟିକା ଆଚ୍ଛନ୍ନ ସୂର୍ଯ୍ୟପର ଅଚିହ୍ନା ରହିଥିଲେ । ସେମାନେ କହୁଥିଲେ— ଆପଣ ସିନା ଚିହ୍ନି ପାରୁ ନାହାନ୍ତି କିନ୍ତୁ ଲୋକେ ଆପଣଙ୍କୁ ଚିହ୍ନିପାରୁ ଅଛନ୍ତି । ଏଥିରୁ ବୁଝି ପାରିବେ ଯେ ସାଧାରଣ ଲୋକଙ୍କ ଅପେକ୍ଷା ମୋର ସ୍ମରଣ ଶକ୍ତି ଖୁବ୍ କମ କିମ୍ବା କେତେ ଜଣଙ୍କ ମଧ୍ୟରେ ମୁଁ ଜଣେ ହେବାରୁ ସେମାନେ ମୋତେ ସହଜରେ ଚିହ୍ନି ପକାନ୍ତି । ମୁଁ ସେମାନଙ୍କୁ ବିଶେଷ ଭାବରେ ଚିହ୍ନି ରଖିପାରେ ନାହିଁ । ତଥାପି ଦେହେବରୁ ଯାହା ଚିହ୍ନିବାକୁ ହୁଏ ତାହା ପୂର୍ଣ୍ଣ ଆତ୍ମାର ପରିଚୟ ହୋଇପାରେ ନାହିଁ ।

ମୁଁ ଅନେକ ସମୟରେ ସମାଜ ସଂସ୍କାର ଉଦ୍ଦେଶ୍ୟରେ ନାନା ପ୍ରକାର ଆନ୍ଦୋଳନ ଆରମ୍ଭ କରିଥାଏ । ଇଚ୍ଛାପୁରର ଗଦାଧର ବିଦ୍ୟାଭୂଷଣ ଉତ୍କଳର ଜଣେ ବିଚକ୍ଷଣ ପଣ୍ଡିତ । ଏହାଙ୍କୁ ବିଶେଷ ଅନୁରୋଧ କରି ଏହାଙ୍କ ଦ୍ୱାରା ଦ୍ୱିତୀୟବାର

ସଂସ୍କାର ପତ୍ରିକା ବାହାର କରାଇଥିଲି । ଇଚ୍ଛାପୁରଠାରେ କେତେ ଜଣ ଉତ୍ସାହୀ ଯୁବକ ସାହାଯ୍ୟରେ ଚନ୍ଦ୍ରହାଣି ବେହେରା, ଜୟମଙ୍ଗଳ ରଥ,ହରମୋହନ ପଟ୍ଟନାୟକ,ଉପଦେଷ୍ଟା ହତ୍ୟନାରାୟଣ ଦ୍ରୁଭୃତିଙ୍କ ସହଯୋଗିତାରେ ବ୍ରହ୍ମପୁରଠାରେ ଏକ ସମାଜ ସଂସ୍କାର ସଂଘ ଆୟୋଜନ କରାଯାଇଥିଲା । କିନ୍ତୁ ଆଶାନୁରୂପ ଫଳ ଫଳିଲା ନାହିଁ । ଯେତେବେଳେ ମୁଁ ଏପରି ସଂସ୍କାର ପ୍ରୟାସ ପଥ ତ୍ୟାଗକରି ଉତ୍କଳରେ ଆର୍ଯ୍ୟ ସମାଜ ସ୍ଥାପନ ଚେଷ୍ଟାକଲି । ରସୁଲକୁଣ୍ଡା ଠାରେ ଜୟମଙ୍ଗଳ ରଥ, ହରିହର ସହଯ୍ୟ, ଅନ୍ତର୍ଯ୍ୟାମୀ ପଟ୍ଟନାୟକ ଓ ମହାଦେବ ରାଉତ ଏମାନଙ୍କୁ ନେଇ ଆର୍ଯ୍ୟ-ସମାଜର ଅନ୍ତରଙ୍ଗ ସଭା ଗଠନ କରାଗଲା । ରସୁଲକୁଣ୍ଡାରେ ଆମର ଥିବା ପକ୍କା କୋଠାରୁ ଦକ୍ଷିଣ ଦିଗ ଭାଗ ଉତ୍କଳ ଆର୍ଯ୍ୟସମାଜ କାର୍ଯ୍ୟାଳୟ ସକାଶେ ମୁଁ ଦାନ କରିଦେଲି । ଏହି ଦାନର ନିରୂପଣ ପତ୍ର ୧୯୨୩ ମାର୍ଚ୍ଚ ୫ ତାରିଖରେ ରସୁଲକୁଣ୍ଡା ସବ୍‌ରେଜିଷ୍ଟ୍ରାର ଅଫିସରେ ରେଜିଷ୍ଟ୍ରାର କରାଗଲା ।

## ମୋର ଉଇଲ

ଆମର ଯାହା କିଛି ସ୍ୱଳ୍ପ ସ୍ଥିର ଅସ୍ଥିର ସଂପତ୍ତି ଥାଏ, ସେଥିରୁ ଭବିଷ୍ୟତ ବିବାଦ ସକାଶେ ଅନେକ ସମୟରେ ଅନେକ ପ୍ରକାର ଉଇଲ୍ ଲେଖି ରଖିଥାଏ, ଯେହେତୁ ଏହି କ୍ଷଣ ଭଙ୍ଗୁର ସଂସାରରେ

ଜୀବନ ସ୍ଥିର ନୁହେଁ । କେତେବେଳେ ଅକସ୍ମାତ୍ ଆଚମ୍ବିତେ ଘଟଣାନ୍ତର ଘଟିଯିବ ଜଣାଯାଏ ନାହିଁ । ଆମ ବୈମାତ୍ରିକ ଭାଇ ନରସିଂହ ପଣ୍ଡାଙ୍କ ପୁତ୍ରକୁ ପୋଷ୍ୟ ପୁତ୍ର ନକରି ଝିଅ ଏବଂ ଭଣଜା ନାମରେ କିଛି ସଂପତ୍ତି ଲେଖି ଦେଇ ଅବଶିଷ୍ଟ ସଂପତ୍ତିକୁ ଗୋରକ୍ଷାଶ୍ରମ, ବିଧବାଶ୍ରମ, ବାଳିକା ବିଦ୍ୟାଳୟ ଏବଂ ଆର୍ଯ୍ୟ ସମାଜ ପାଇଁ ଖଞ୍ଜି ଦେବା ଦେଖି, ଆମ୍ଭ ଭାଇ ନରସିଂହ ପଣ୍ଡା ମୋ ବିରୋଧରେ ଉଠିଲେ । ଆମ୍ଭେମାନେ ୨୦।୨୫ ବର୍ଷ ପୂର୍ବରୁ ବାଣ୍ଟି ହୋଇ ଯେଝା ସଂପତ୍ତି ନିର୍ବିବାଦରେ ଭୋଗ କରି ଆସୁଥିଲେ ହେଁ ମୋର ଦଖଲ ସଂପତ୍ତିରେ ତାହାଙ୍କର ଭାଗଅଛି ବୋଲି କହି ମିଥ୍ୟା ଅଭିଯୋଗରେ ସେ ବଳପୂର୍ବକ ଭୂମି ଆକ୍ରମଣ କଲେ, ମାମଲା ମକଦ୍ଦମା ଆରମ୍ଭ କଲେ । ମକଦ୍ଦମା ଅବ୍ୟାପାରରେ ପଶିବା ମୋର କେବେ ହେଁ ଇଚ୍ଛା ନଥାଏ । ତହିଁରେ ପୁଣି ଅସହଯୋଗ ଆନ୍ଦୋଳନ ଆରମ୍ଭ ହେଲା । ସେତେବେଳେ ନରସିଂହ ଭାଇଙ୍କୁ ମଦାର ଗ୍ରାମରେ ମୋର ୮ ଏକର ଜମି ସେଟଲମେଣ୍ଟ କରି ଦେଲି ।

ପୁତ୍ର ସନ୍ତାନ ଥିଲେ ପୈତୃକ ସଂପତ୍ତି ଅନ୍ୟ କାହାକୁ କିମ୍ବା କୌଣସି ଧର୍ମ କାର୍ଯ୍ୟରେ ଦିଆଯାଇ ପାରନ୍ତା ନାହିଁ । ସୌଭାଗ୍ୟକ୍ରମେ ପୁତ୍ର ନ ଥିବାରୁ ଧର୍ମ କର୍ମରେ କିଛି ସଂପତ୍ତି ବିନିଯୋଗ କଲାବେଳେ ଜ୍ଞାତିମାନେ ଦାବାନଳ ସ୍ୱରୂପ ବହୁ ଅନିଷ୍ଟ କରିଥାନ୍ତି । ୧୮୯୯ ସାଲରେ ଆମ୍ଭେମାନେ ବାଣ୍ଟି ହେଲୁ । ସେତେବେଳେ

ନରସିଂହ ନାବାଳକ ଥିଲେ, ତାଙ୍କ ମାଆ ତାଙ୍କର ଅଭିଭାବିକା ଥିଲେ । ନରସିଂହଙ୍କର ନାବାଳକତ୍ୱ ଯାଇ ୧୫।୧୬ ବର୍ଷ ବିତି ଗଲା । ଏ ମଧ୍ୟରେ ଆମ୍ଭେମାନେ ସୁଖ ଶାନ୍ତି ଓ ସୌହାର୍ଦ୍ଦ୍ୟ ସହକାରେ ରହିଲୁ । ୧୯୨୩ ସାଲରେ ନରସିଂହ ମୋ ସଙ୍ଗେ ବିବାଦ କରି ଆମ ଭୂମି ଅତିକ୍ରମଣ କରନ୍ତି । ପୃଥ ଏକା ଘରେ ସବେ ସବା, ଝିଅ କାଟୁ ବୁଢେ଼ ଏହାହିଁ ଜ୍ଞାତିମାନଙ୍କର ଧାରଣା । ଆମ୍ଭର ଜଣେ ଭାଇ କାଶୀନାଥ ପଣ୍ଡା ଅପୁତ୍ରିକ ଥାଇ ଆପଣାର ଏକମାତ୍ର ଝିଅକୁ ଆପଣାର ସଂପତ୍ତି ଦେଇଗଲେ ବୋଲି ଅନ୍ୟ ଭାଇମାନେ ତାଙ୍କ ପ୍ରତି ଚଡ଼୍‌ଗହସ୍ତ । ଭାରତ ଦେଶରେ ସର୍ବତ୍ର ନାରୀ ଜାତିର ନିର୍ଯ୍ୟାତନା । ଏହାହିଁ ଭାରତ ଦେଶ ଅବନତିର ଏକ ପ୍ରଧାନ କାରଣ ।

ଜାତି ବହୁଳ ଭାରତ ଦେଶରେ ଜାତିଆଣ ସଭା ବାଡ଼ ସ୍ୱରୂପ ହୋଇ ସମାଜରେ ବହୁ ଅନିଷ୍ଟ ସଂପାଦନ କରେ । ୧୯୨୩ ସାଲ ବୈଶାଖ ପୂର୍ଣ୍ଣିମା ଦିନ ଭୁବନେଶ୍ୱର ରତଙ୍ଗ ଠାରେ ସାରୁଆ ବ୍ରାହ୍ମଣ ମାନଙ୍କର ଜାତିଆଣ ସଭା ହୋଇଥିଲା । ଏକମାତ୍ର ବ୍ରତ ବିବାହାଦି କାର୍ଯ୍ୟରେ ସଭାଖତ ନାମରେ ଯେଉଁ ଧନ ଆଦାୟ ହୁଏ ତାହାର ସଂଗ୍ରହ କରିବା ହିଁ ଏହି ସଭାର ପ୍ରଧାନ ଉଦ୍ଦେଶ୍ୟ ଥିଲା । ଏହି ଧନ ସବୁ ସେମାନଙ୍କର ଇଷ୍ଟ ଦେବତା ସୁନ୍ଦର ମାଧବକପିଳେଶ୍ୱର ମଠର ମରାମତି ଦିଗରେ ଖର୍ଚ୍ଚ କରିବାକୁ ନିଷ୍ପତ୍ତି କରିଥିଲେ ।

ସେତେବେଳେ ମୋର ପ୍ରସ୍ତାବ କ୍ରମେ ଉକ୍ତ ଧନରୁ ବେଦଶିକ୍ଷା ଓ ଗୋରକ୍ଷା ସକାଶେ କିଛି ଦେବା ସ୍ଥିର ହେଲା । କିନ୍ତୁ ସଙ୍କଳ୍ପିତ ଅର୍ଥର ବେଦଶିକ୍ଷା ଓ ଗୋରକ୍ଷା ସକାଶେ କିଛି ମାତ୍ର ଦେଇ ନାହାନ୍ତି ।

୧୯୨୫ ସାଲ ସରିକି ପ୍ରାୟ ୧୫,୦୦୦ ଟଙ୍କା ବ୍ୟୟରେ ସଙ୍କଳ୍ପିତ ଗୋରକ୍ଷାଶ୍ରମ ଯଥା ତଥା ସ୍ଥାପିତ ହୋଇଗଲା । ବାଙ୍କେଶ୍ୱର ଗ୍ରାମରେ ଟ ୧୨,୦୦୦ ଙ୍କା ମୂଲ୍ୟରେ ୩୦ ଏକର ଜଳଯୁକ୍ତ ଜମି ନିଆଗଲା ଏବଂ ଟ ୩.୦୦୦ ଙ୍କା ଖର୍ଚ୍ଚରେ ଗୋଶାଳା ବଗିଚା, ଆଶ୍ରମ ଗୃହ ଏବଂ କୂପ ନିର୍ମାଣ କରାଗଲା । ଛଅଘର ଉପଯୁକ୍ତ ଗୋଶାଳା ଭିଟିରେ ନିବାସ କରି, ଉକ୍ତ ଭୂମି କୃଷିକରି ଆୟରୁ ଅର୍ଦ୍ଧେ ଗୋଶାଳାକୁ ଦେଇ ବାକି ଅର୍ଦ୍ଧକ ପୁତ୍ର ପୌତ୍ରାଦି କ୍ରମେ ଚିରକାଳ ଭୋଗ କରିବା ପାଇଁ ସେମାନଙ୍କୁ ଉପଯୁକ୍ତସ୍ୱତ୍ୱ ରେଜେଷ୍ଟ୍ରି କରି ଦିଆଗଲା । ଗୋଶାଳା ଭିଟିରେ ନିବାସ କରି ଗୋମାତାର ଅମୃତ ନିର୍ଯ୍ୟାସ ସକାଶେ କିଛି ବାର୍ଷିକ କର ଦେବା ନିମନ୍ତେ ଅନ୍ୟାନ୍ୟ ଲୋକଙ୍କୁ ମଧ୍ୟ ଗୋଶାଳା ଭୂମିରୁ ଭିଟି ରେଜେଷ୍ଟ୍ରି କରି ଦିଆଗଲା ।

ମନ୍ଦାର ଗ୍ରାମରେ ଆମର ପଡ଼ିଶାଘର କୃଷ୍ଣ ଷଣ୍ଡାଙ୍କ ସ୍ତ୍ରୀ ବିୟୋଗ ହୋଇ ଯିବାରୁ ତାହାଙ୍କର ଦୁଇ ବର୍ଷ ବୟସ୍କା ଜମ୍ବୁ ନାମ୍ନୀ କନ୍ୟାଟିକି ଆମ ସ୍ତ୍ରୀ ନେଇ ପୋଷିପାଳି ରଖିଲେ । ବନମାଳି

ବୋଲି ଆଉ ଦୁଇଣ ଅନାଥ ବାଳକ ମଧ୍ୟ ଥିଲା । ଏହି ଦୁଇ ବାଳକ ବାଳିକାକୁ ପୋଷିପାଳି ରଖି ବିଦ୍ୟାଶିକ୍ଷା ଦେଇ ସେମାନଙ୍କୁ ବିବାହ କରାଇ ଦେଇ ଆମ୍ଭର ଅବଶିଷ୍ଟ ଭୂ-ସମ୍ପତ୍ତି ଭଳ ସେ ଦୁହିଁଙ୍କୁ ଦେଇ ଦେବା ଇଚ୍ଛା ବିନୁ ବିନ ମୋର ଏବଂ ମୋ ସ୍ତ୍ରୀର ବଳବତୀ ହେଉଥିଲା । ଦୁର୍ଘଟଣା କ୍ରମେ ୧୯୨୪ ସାଲ ଜ୍ୟେଷ୍ଠ ଅମାବାସ୍ୟା ଉପଲକ୍ଷେ ନିଜ ଭଉଣୀକୁ ଦେଖି ଆସିବା ପାଇଁ ବିଦ୍ୟାଳ ବ୍ରାହ୍ମଣ ଗ୍ରାମକୁ ଗଲା । କିନ୍ତୁ ସେଠାରୁ ଆଉ ଫେରିଲା ନାହିଁ । ଅନ୍ୟ ଏକ ପିଲା ସଙ୍ଗରେ ପଡ଼ି ସେ କଲିକତା ବାହାରି ଗଲା । ଯାହାକୁ ଯାହା ଯୋଗ ଅଛି, ସବୁ ଈଶ୍ୱରଙ୍କ ଇଚ୍ଛା ।

## ଛାପାଖାନା

ଖ୍ରୀ ୧୯୨୦ ରେ ପେନ୍‌ସନ ଗ୍ରହଣ ପରେ ୧୯୨୪ ପର୍ଯ୍ୟନ୍ତ ରସୁଲକୁଣ୍ଡା ଠାରେ ସ୍ୱଦେଶୀ ନାମରେ ଗୋଟିଏ ଛାପାଖାନା ରଖାଗଲା । ବେଲଗୁଣ୍ଠା ନିବାସୀ ଆନନ୍ଦ ସାହୁ ଛାପାଖାନାର ପରିଚାଳକ ହେଲେ । ନାନା ପ୍ରକାର ଗୁଡ଼ିଏ ଛାପା ହେଲା । ନାନାବିଧ ବାଧାବିଘ୍ନ ଯୋଗୁ ସ୍ୱଦେଶୀ ନାମକ ମାସିକ ପତ୍ରିକା ବାହାରି ପାରିଲା ନାହିଁ । ୧୯୨୪ ସାଲରେ ଆନନ୍ଦ ସାହୁ ସହିତ ମନାନ୍ତର ଘଟିବାରୁ ସେ ଛାପାଖାନା ଛାଡ଼ିଦେଲେ ଓ ରଣପୁର ଚାଲିଗଲେ । ଛାପାଖାନା ପୁଣି ରଘୁନାଥ ମିଶ୍ରଙ୍କୁ ପାଞ୍ଚବର୍ଷ ପାଇଁ ଠିକା ଦିଆ ହୋଇଗଲା । ରଘୁନାଥ ମିଶ୍ର ରସୁଲକୁଣ୍ଡା ଠାରୁ ଆମର ସେହି ଛାପାକଳ ଆଦି ଜିନିଷ ନେଇ ପୁରୀ ଠାରେ 'ମହାନା

ବନ୍ଧୁ ପ୍ରେସ୍' ନାମରେ ଛାପାଖାନା ଆରମ୍ଭ କଲେ । ସେ ଚୁକ୍ତି ଅନୁସାରେ ଟଙ୍କା ଦେଇ ମଫାଣ୍ଡ କମ୍ପା କାର୍ଯ୍ୟ କରିଦେଇ ମଫାଣ୍ଡ ବନ୍ଦ ବଇସଣ କଲେ । ସେହି ମନ୍ତ୍ରଣା ବନ୍ଧୁ ପ୍ରେସରୁ ରଘୁନାଥ ମିଶ୍ର ମୋର "ଆର୍ଯ୍ୟ" ନାମକ ଗୋଟିଏ ମାସିକ ପତ୍ରିକା ବାହାର କରିଦେବେ ବୋଲି ପ୍ରତିଜ୍ଞା କରିଥିଲେ, କିନ୍ତୁ ପାଳନ କଲେନାହିଁ । ଅନେକ ଲୋକଙ୍କର ମୁଁ ଉପକାର କରିଅଛି, କିନ୍ତୁ ପ୍ରତିବଦଳରେ ଅପକାର ପାଇଛି । ରଘୁନାଥ ମିଶ୍ର ମଧ୍ୟ ସେହି ପରି ବା ତତୋଧିକ ଅକୃତଜ୍ଞ ଓ କୃତଘ୍ନ ହେଲେ ।

୧୯୨୪ ରେ ପୁରୀ ସତ୍ୟବାଦୀ ପ୍ରେସରେ ଆରୋଗ୍ୟ ବିଧାନ ନାମକ ମୋର ଖଣ୍ଡିଏ ଅନୁବାଦ ପୁସ୍ତକ ଛାପାଗଲା । ଏ ପୁସ୍ତକର ପାଣ୍ଡୁଲିପି ୨ ବର୍ଷ ପର୍ଯ୍ୟନ୍ତ ପାଖରେ ରଖି ରଘୁନାଥ ମିଶ୍ର ମନ୍ତ୍ରଣା ବନ୍ଧୁ ପ୍ରେସରେ ଛାପି ଦେଲେ ନାହିଁ ।

## ସଂସ୍କାର ମାସିକ ପତ୍ର

୧୯୨୭ ମସିହା ଠାରୁ ବ୍ରହ୍ମପୁର ଠାରେ "ସଂସ୍କାର"ନାମକ ମାସିକ କାଗଜ ମୋର ସଂପାଦକତ୍ୱରେ ଏବଂ ଅଧୀନତାରେ ପ୍ରକାଶ କରାଗଲା । ଜୟମଙ୍ଗଳ ରଥେ, ଉକ୍ତ ମାସିକ ପତ୍ରିକାର ପରିଚାଳକ ନିଯୁକ୍ତ ହେଲେ । ଏହି ସଂସ୍କାର ପ୍ରକାଶ ନିମନ୍ତେ ମୁଁ ମାସିକ ଟ ୫୦ ଙ୍କା ମାତ୍ର ଦିଏ । ଏହି ଟଙ୍କାରେ ସମସ୍ତ କାର୍ଯ୍ୟ

ନିର୍ବାହ ହୁଏ । ୧୯୨୭ ଶେଷ ପର୍ଯ୍ୟନ୍ତ ଏକବର୍ଷ ମାତ୍ର ମୋର ସଂପାଦକତ୍ୱରେ ଏବଂ ସଂପୂର୍ଣ୍ଣ ସାହାଯ୍ୟରେ 'ସଂସ୍କାର' ପ୍ରକାଶିତ ହେଲା । ଏହି ବର୍ଷ ପ୍ରାୟ ଦୁଇଶତ ପର୍ଯ୍ୟନ୍ତ ଗ୍ରାହକାଦାୟ ହେଲା । ପରନ୍ତୁ ଜୟମଙ୍ଗଳ ରଥ ସେହି ଟଙ୍କା ସଂସ୍କାର କାମରେ ନ ଲଗାଇ, ଇଚ୍ଛା ଅନୁସାରେ ଅନ୍ୟାନ୍ୟ ପ୍ରଚୁର କାର୍ଯ୍ୟରେ ଖର୍ଚ୍ଚ କଲେ । ମୋ ଠାରୁ ମାସିକ ଟ ୫୦ ଙ୍କା ସାହାଯ୍ୟ ମିଳେ ବୋଲି ପତ୍ରିକାର ଗ୍ରାହକ ଆଦାୟ ପ୍ରତି ସେ ମନୋଯୋଗ ଦେଲେ ନାହିଁ । ପୁଣି ମୁଁ ଦୂରସ୍ଥ ଗୋଶାଳାରେ ରହିବା ଲାଗି ମୋର ଆଦେଶ ଓ ଇଚ୍ଛା ବିରୁଦ୍ଧ ଲେଖାମାନ ସଂସ୍କାରରେ ପ୍ରକାଶ କଲେ । ଏହିସବୁ କାରଣରୁ ସଂସ୍କାର ପ୍ରକାଶ କାର୍ଯ୍ୟ ଜୟ ମଙ୍ଗଳଙ୍କୁ ଦେଇ ଦେଇ ଦ୍ୱିତୀୟ ବର୍ଷ ପ୍ରାରମ୍ଭରୁ ମୁଁ ତହିଁରୁ ନିବୃତ୍ତ ହେଲି ।

## ବିଧବାଶ୍ରମ

ବ୍ରହ୍ମପୁରଠାରେ ସଂସ୍କାର ଅଫିସ ଏବଂ ବିଧବାଶ୍ରମ ସ୍ଥାପନ କରିବା ପାଇଁ ଜୟମଙ୍ଗଳଙ୍କ ପିତା ନାରାୟଣ ରଥଙ୍କ ପରାମର୍ଶାନୁସାରେ ବ୍ରହ୍ମପୁର ନିକଟ ଲଂଜ ପଲ୍ଲିଠାରେ ଗୋଟିଏ ଡ଼ିହ ଜାଗା କଣା ହେଲା । କିନ୍ତୁ କିଛି ଅସୁବିଧା ଯୋଗୁ ସେହି ଯାଗାଟା ବିକ୍ରି ହୋଇଗଲା । ତାପରେ ୧୯୨୭ ଅକ୍ଟୋବର ମାସରେ ବ୍ରହ୍ମପୁରଠାରେ ବ୍ୟାଙ୍କ ନିକଟରେ, ଏକ ଜାଗା

କଣାଗଲା । ଏଠାରେ ବିଧବାଶ୍ରମ ସ୍ଥାପନରେ ପ୍ରାୟ ଏକ ବର୍ଷ ବିତିଗଲା । ସ୍ଥାନୀୟ ଲୋକଙ୍କଠାରୁ ସାହାଯ୍ୟ ସହାନୁଭୂତି ମିଳିଲା ନାହିଁ । ପୁଣି କେହି ତ୍ୟାଗୀ କର୍ମୀ ମଧ୍ୟ ବାହାରିଲେ ନାହିଁ । ଲାହୋର ବିଧବା ବିବାହ ସହାୟକ ସଭା ସମ୍ପାଦକଙ୍କୁ ବାରମ୍ବାର ପତ୍ର ଲେଖି ଅନୁରୋଧ କରାଗଲା । ମୋର ସେହି ଘରଟା ନେଇ ତହିଁରେ ସେମାନେ ନିଜ ଖରଚରେ ବିଧବାଶ୍ରମ ଖୋଲିବା ପାଇଁ ସଭାର ଶେଷ ସିଦ୍ଧାନ୍ତ ଜାଣିବାରେ ବହୁତ ବିଳମ୍ବ ହେଲା । ଏହେତୁ ବିଧବାଶ୍ରମ ଓ ସଂସ୍କାର ଅଫିସ ନିମନ୍ତେ କଣା ଯାଉଥିବା ବ୍ରହ୍ମପୁର ଘର ମ୍ୟୁନସଫ୍ ଗଣେଶ ମହାପାତ୍ରଙ୍କୁ ବିକି ଦିଆଗଲା । ୧୯୨୭ ଖ୍ରୀଷ୍ଟାବ୍ଦରେ ମୋର ଅତ୍ୟନ୍ତ ଅର୍ଥାଭାବ ଘଟିଥିଲା । ତଥାପି ଋଣ ଉଧାର କରି ଅନେକ କାର୍ଯ୍ୟରେ ହସ୍ତକ୍ଷେପ କରିଅଛି । ଗୋଶାଳାର ପ୍ରାଚୀର ପୁଣି ଦକ୍ଷିଣ ପଟ୍ଟ ଅନ୍ୟ ଏକ ଗୋଶାଳାର ନିର୍ମାଣ କରାଯାଇଅଛି । ଏଥିରେ ୧୦୦୦ ଟଙ୍କା ଦେଇଁ ହେବାର କଥା । ବେଲଗୁଣ୍ଠା ପଲ୍ଲୀବାସୀ ପ୍ରେସରୁ ଆର୍ଯ୍ୟ ନାମରେ ଗୋଟିଏ ମାସିକ ପତ୍ର ପ୍ରକାଶନର ଆୟୋଜନ ଲଗିଛି । ଅନ୍ତତଃ ମାସିକ ଟ ୨୫ ଙ୍କା ବ୍ୟୟ ହେବ । ପୁଣି ମୋର ଯେ ସବୁ ପ୍ରବନ୍ଧ ମାନ ନାନା ଖବର କାଗଜରେ ବାହାରିଛି ସେସବୁ ଏକତ୍ର କରି ପୁସ୍ତକ ଆକାରରେ ପ୍ରକାଶ ପାଇଁ ୨୦୦ ଟଙ୍କାର କାଗଜ କାଳି ନେଇ ପଲ୍ଲୀବାସୀ ପ୍ରେସ ପରିଚାଳକ ଲିଙ୍ଗରାଜ ଦାସଙ୍କ ଜିମା ଦିଆଯାଇଅଛି । କୌଣସି ସଦନୁଷ୍ଠାନ ମନରେ ଜାତ ହେଲେ ଧନପ୍ରତି ବିଚାର ନକରି ପରିଣାମ ପ୍ରତି ଦୃଷ୍ଟି ନରଖି

କାର୍ଯ୍ୟ ଆରମ୍ଭ କରିଦେବା ମୋର ଏକ ସ୍ୱଭାବ । କିନ୍ତୁ ଆରମ୍ଭରୁ ଅର୍ଥାଭାବରୁ ଓ ସାହାଯ୍ୟ ଅଭାବରୁ ଅତି ଅଳ୍ପ ସମୟରେ ସେ ସବୁ ନଷ୍ଟ ହୋଇଯାଏ ।

ଗୋଶାଳା ଆବରଣ ମଧ୍ୟରେ ସ୍ୱାମୀ ଶ୍ରଦ୍ଧାନନ୍ଦ ସ୍ମୃତିରକ୍ଷା ଓ ବୈଦିକ ଆର୍ଯ୍ୟଧର୍ମ ପ୍ରଚାର ଉଦ୍ଦେଶ୍ୟରେ ଶ୍ରଦ୍ଧାନନ୍ଦ ପାଠାଗାର ନାମରେ ଗୋଟିଏ ପକ୍କା ଗୃହ ନିର୍ମାଣ ଆରମ୍ଭ କଲେଗଲି । ୧୯୨୯ ସାଲରେ ଆନନ୍ଦ ସାହୁ ରଣପୁର ଠାରୁ ଆସି ଗୋରକ୍ଷା-ଶ୍ରମ ଅନୁଷ୍ଠାନର ପରିଚାଳକ ନିଯୁକ୍ତ ହେଲେ । ସେହାଙ୍କ ସମୟରେ ଗୋଶାଳା ପୋଖରୀର ପାହାଚ କରାଗଲା ଏବଂ ପ୍ରସ୍ତାବିତ ଶ୍ରଦ୍ଧାନନ୍ଦ ପାଠାଗାରର ମୂଳଦୁଆ ପଡ଼ି ପ୍ରାୟ ଦେଢ଼-ହାତ କାନ୍ଥ ଗଢ଼ାଯାଇ ଅର୍ଥାଭାବରୁ କାମ ବନ୍ଦ ରହିଲା । ଏହି କାର୍ଯ୍ୟ ୧୯୩୪ ଠାରୁ ଆରମ୍ଭ ହୋଇ ୧୯୩୬ରେ ଅର୍ଯ୍ୟ ମନ୍ଦିର ଶ୍ରଦ୍ଧାନନ୍ଦ ଭବନର ନିର୍ମାଣ କାର୍ଯ୍ୟ ପୂର୍ଣ୍ଣ ହେଲା ।

## ରୋଗଗ୍ରସ୍ତ

ମୋର ୧୯୩୦ ସାଲଠାରୁ ଶରୀର ସ୍ୱାସ୍ଥ୍ୟ ବିଗିଡ଼ିବା ଆରମ୍ଭ ହେଲା । ବଧିରତା, କୋଷ୍ଠକାଠିନ୍ୟ, ବହୁମୂତ୍ର ଓ ବାତ ବିକାର ଇତ୍ୟାଦି ନାନା ରୋଗରେ ଦେହ ପୀଡ଼ିତ ହେବାକୁ ଲାଗିଲା । ନିଜେ ଆପଣା ଆତ୍ମଚରିତ ଏ ପର୍ଯ୍ୟନ୍ତ ଯାହା

ଲେଖିଥିଲି ହେଉନା, ଆଉ ଅଧିକ ନଜେ ଲେଖି ପାରିଲି ନାହିଁ । ମୋର କର୍ମମୟ ଜୀବନରୁ ଅପୂର୍ବ ଅଭିନବ ଘଟନାପୂର୍ଣ୍ଣ ଚନ୍ତାପୂର୍ଣ୍ଣ ଲେଖାରୁ ପୁଣି କଥନ ପ୍ରସ୍ତଲରୁ, ସଙ୍ଗୀ ମାନଙ୍କଠାରୁ ଓ ମୋର ପ୍ରତିଦିନ ଡାଇରୀ ଖାତାରୁ ଆଣି ତାହା ଏ ଜୀବନୀରେ ସଂଗୃହୀତ କରିବେ ।

## ମୋର ଶେଷ ଅନ୍ତ୍ୟେଷ୍ଟି କ୍ରିୟା

ଆଜକୁ ପ୍ରାୟ ୭ ବର୍ଷ ହେବ ମୁଁ ନାନା ରୋଗରେ ପୀଡ଼ିତ ଏବଂ ଅକର୍ମଣ୍ୟ ହୋଇ ପଡ଼ିଛି । ଆଉ କିଛି ଲେଖାପଢ଼ା କରିପାରୁ ନାହିଁ । ମୋର ଜୀବନର ପ୍ରବଳ ଇଚ୍ଛା ସଫଳ ହୋଇ ପାରିଲା ନାହିଁ, ସେଥିପାଇଁ ମାତ୍ର ଚିନ୍ତିତ । ଯେ ଯାହା ହେଉ ସେ ସବୁ ଭଗବାନଙ୍କ ଇଚ୍ଛା । ଆମ୍ଭ ହିନ୍ଦୁ ସମାଜରେ ଯେଉଁ ଅନ୍ତ୍ୟ କ୍ରିୟା ପ୍ରଚଳିତ ତାହା ଏକାନ୍ତ ବେଦ ବିରୁଦ୍ଧ ।

ଜାତି ବିଚାର, ପ୍ରତିମା ଉପାସନା ଇତ୍ୟାଦି କୁସଂସ୍କାର ବିରୁଦ୍ଧରେ ତୀବ୍ର ପ୍ରତିବାଦ କରି ଆସୁଥିଲି । ଆଉ କିଛି ନହେଲେ ମଧ୍ୟ ମୋର ଅନ୍ତ୍ୟେଷ୍ଟି-କ୍ରିୟାଟିକ ଯଥା ସମ୍ଭବ ବେଦ ଓ ଯୁକ୍ତି ସଂଗତ ଆଦର୍ଶ ହୋଇ ରହିବା ଉଚିତ ମନେ କରି ଏହା ମୋର ନିର୍ଦ୍ଧାରଣ ଘର ବଂଶଧରମାନଙ୍କ ପାଇଁ ଲେଖିରଖି ଯାଉଛି । ମୁଁ ମରିଯିବା ପରେ ମୋର ଶବଟାକୁ ସ୍ନାନ କରାଇ ନୂତନ ବସ୍ତ୍ର ପରିଧାନ କରାଇ ଶ୍ମଶାନ ଭୂମିକୁ ନେଇ, ଚିତା ଉପରେ ଜାଳିଦେବା ପାଇଁ କେହି ଚିନ୍ତା କରିବ ନାହିଁ ।

ମୋର ଶରୀରର ଯାହା ଓଜନ ଥିବ, ସେହି ଓଜନ ଘଟମାନରେ ଘୃତ ସହ ସୁବାସିତ ଦ୍ରବ୍ୟ ସକଳ ପରିମିତ କରି 'ଲୋକାୟ ସ୍ୱାହା' ଇତ୍ୟାଦି ମନ୍ତ୍ରରେ ଆହୁତି ପ୍ରଦାନ କରିବ । ପ୍ରେତ ନାମରେ ବ୍ରାହ୍ମଣ ଭୋଜନ ଦିଆଯିବ ନାହିଁ । ମୋର ସ୍ମୃତି ରକ୍ଷା ସକାଶେ ଦେବାଳୟ, ପୋଖରୀ, ପାଠଶାଳା, ଔଷଧାଳୟ ଇତ୍ୟାଦି ଅନୁଷ୍ଠାନ କରଯାଇ ପାରିବ । ଶବଦାହ ଓ ପ୍ରେତ ଭୋଜନ ଇତ୍ୟାଦି କ୍ରିୟାରେ ଯାହା ସମ୍ଭବତଃ ୫୦୦ ଟଙ୍କା ପର୍ଯ୍ୟନ୍ତ ଖର୍ଚ୍ଚ ହୁଅନ୍ତା, ସେହିତକ ଧନ କୌଣସି ପାଠଶାଳା ନିର୍ମାଣରେ ବ୍ୟୟ କରିବ, ନତୁବା ପ୍ରତିଷ୍ଠିତ ଗୋରକ୍ଷାଶ୍ରମକୁ ଦାନ କରିଦେବ, ସେଥିରେ ଯେପରି ଗୋଟିଏ ଦାତବ୍ୟ ଔଷଧାଳୟ ପ୍ରତିଷ୍ଠିତ ହେବ । ଏହା ଯଦି ମୋର ଉତ୍ତରାଧିକାରୀ ନ କରନ୍ତି ତେବେ ମୋର ଧର୍ମ ବୁଝିଲେ ନାହିଁ ବୋଲିବାକୁ ହେବ । ଆମ୍ଭ ଜାତିଆଣ ଭାବରେ ଏହି ପ୍ରେତାନ୍ନ ଦାନ ଓ ଭୋଜନ ନିଷେଧ କରଯାଉ ଥିଲେ ହେଁ ଆମ୍ଭ ବ୍ରାହ୍ମଣମାନେ ସେହି ପ୍ରଲୋଭନ ଛାଡ଼ିପାରୁ ନାହାନ୍ତି । ଆଶାକରେ ଭାବି ବଂଶଧରମାନେ ଏହି ବିଷୟ ଶିକ୍ଷା କରିବେ । ଏଥିରୁ ଜନଗୋଷ୍ଠି କପି ସମାଜ ଇତ୍ୟାଦି ସମ୍ବାଦ ପତ୍ରରେ ପ୍ରକାଶ କରଇ ଦେବେ ।

ଶ୍ରୀବତ୍ସ ପଣ୍ଡା- ତା ୨୩ । ୧୧ । ୪୨

# ଶେଷ ଜୀବନ

ଛତ୍ରପୁରଠାରୁ ଫେରି ଆସିକା ଭ୍ରାତୃଷ୍ପୁତ୍ର ରଘୁନାଥ ପଣ୍ଡା ଓ ବ୍ରଜନାଥ ପଣ୍ଡାଙ୍କ ଗୃହରେ ରହିଲେ । ପରଦିନ ତାଙ୍କର ସ୍ତ୍ରୀ କ୍ଷିପ୍ର ତାଙ୍କଠାରୁ ବହୁତ ସଂଗ୍ରାମ କରି ତାଙ୍କୁ ନେଇ ଆସିଲେ । ଶ୍ରୀ ରଘୁନାଥ ପଣ୍ଡା ସାଙ୍ଗରେ ଆସି ପଣ୍ଡାଜୀଙ୍କୁ ଆଶ୍ରମରେ ଛାଡ଼ି ଦେଲେ । ପଣ୍ଡାଜୀ ଜୀବନର ଶେଷ ସଂଗ୍ରାମରେ ମଧ୍ୟ ଆଶ୍ରମରେ ଉପସ୍ଥିତ ହୋଇ ଯଜ୍ଞ ମଣ୍ଡପ ପାଇଁ ପ୍ରାରମ୍ଭିକ କାର୍ଯ୍ୟ ସମାପନ ଦେଇଥିବା ଠିକାର କାର୍ଯ୍ୟ ଆରମ୍ଭ ହୋଇ ନଥିବା ଦେଖି ବଡ଼ ବିରକ୍ତି ଓ ଦୁଃଖ ପ୍ରକାଶ କଲେ । ସେହିଦିନ ତାଙ୍କ ସ୍ତ୍ରୀ ଓ ଜାମାତା ଆସି ତାଙ୍କୁ ରସୁଲକୁଣ୍ଡା ନେଇଗଲେ । ରସୁଲକୁଣ୍ଡାରେ ସେ ପ୍ରାୟ ୮/୧୦ ଦିନ ରହିଥିଲେ । ବେଳେ-ବେଳେ ତାଙ୍କର କେତେକ ଶିଷ୍ୟ କର୍ମୀ ଓ ବନ୍ଧୁଙ୍କର ସାକ୍ଷାତ ମଧ୍ୟ ହୁଏ । ୧୯୫୩ ମସିହା ମେ ମାସ ଶେଷ ସପ୍ତାହରେ ଦିନେ ପଣ୍ଡାଜୀଙ୍କୁ ଗୋଟିଏ ବଳଦ ଗାଡ଼ିରେ ମନ୍ଦାର ନେଇ ଆସିଲେ । ମନ୍ଦାର ଦାଣ୍ଡ ମଝିରେ ଗାଡ଼ି ଚାଲିଥାଏ । ଗାଡ଼ି ମଧ୍ୟରେ ପଣ୍ଡାଜୀ ବସିଛନ୍ତି । ମନ୍ଦାର ଗ୍ରାମ ନିବାସୀ ବୈଷ୍ଣବ ଲେଙ୍କା ଏବଂ ସନ୍ନ୍ୟାସୀ ଗୋଛନ୍ତୁଙ୍କ ଦେଖା ହେଲା । ଗାଡ଼ି ସାଙ୍ଗରେ ସେ ଦୁଇଜଣଙ୍କୁ ଡାକି ଘରଠାକୁ ଆସିଲେ । ସେ ଦୁଇଜଣଙ୍କୁ ଉପଦେଶ ଛଳରେ ଗ୍ରାମର ଓ ଲୋକଙ୍କର ମଙ୍ଗଳ କାର୍ଯ୍ୟ କରିବା ପାଇଁ ବହୁତ ଗୁଡ଼ିଏ ଉପଦେଶ ଦେଲେ ଏବଂ ଆଉ ଏ ଜଗତରେ ରହିବାକୁ ଭଲ ଲାଗୁ ନାହିଁ ବୋଲି କହିଲେ । ଏ ଘଟଣା

ସକାଳ ୧୦ ଘଣ୍ଟା ସମୟର କଥା । ସେହିକ୍ଷଣି ପଣା ଟିକିଏ ପିଇବାକୁ ଇଚ୍ଛାକଲେ, କିନ୍ତୁ ତାଙ୍କ ପାଟିକୁ ପଣା ଆଉ ଭଲ ଲାଗିଲା ନାହିଁ । ସେ ଗୋଟିଏ ଖଟରେ ଶୋଇ ପଡ଼ିଲେ । ଆଉ ଆଖି ଫିଟାଇ ଚାହିଁ ନାହାନ୍ତି ବା କଥାବାର୍ତ୍ତା କରି ନାହାନ୍ତି । ମନ୍ଦାର ଆସିବା ଠିକ ଏକ ସପ୍ତାହ ପରେ ଜ୍ୟେଷ୍ଠ ଶୁକ୍ଳ ତୃତୀୟା ୧୯୪୩ ମେ ୧୧ ତାରିଖ ସକାଳ ୮ ଘଡ଼ିକା ସମୟରେ ୭୩ ବର୍ଷ ବୟସରେ ସେ ଶେଷ ନିଃଶ୍ୱାସ ତ୍ୟାଗ କଲେ । ତାଙ୍କର ସଂକଳ୍ପିତ ବେଦ ବିଦ୍ୟାଳୟ, ପୂର୍ବ ଦିନ ଅର୍ଥାତ୍ ଶୁକ୍ଳ ଦ୍ୱିତୀୟା ଦିନ ଆଶ୍ରମଠାରେ 'ଶ୍ରୀବନ୍ଧୁ ଆର୍ଯ୍ୟ ପାଠଶାଳା' ଅନୁଷ୍ଠିତ ହୋଇ ଯାଇଥିଲା ।

## ଶେଷ କୃତ୍ୟ

କ୍ଷଣକ ମଧ୍ୟରେ ଚତୁର୍ଦ୍ଦିଗ ଗ୍ରାମମାନଙ୍କରେ ସେଣ୍ଡରେ ଖବରଟା ଆପେ ଆପେ ବ୍ୟାପ୍ତ ହୋଇଗଲା । ସ୍ୱର୍ଗୀୟ ଶ୍ରୀବନ୍ଧୁ ମଣ୍ଡାଙ୍କ ମୃତଦେହ ଦର୍ଶନ ପାଇଁ ବହୁଲୋକ ରୁଣ୍ଡ ହୋଇଗଲେ । ଦୈବଯୋଗ ତା ପୂର୍ବରୁ ଶ୍ରୀ ଜନକଲ୍ୟାଣ ବେହେରା ନଜର ସ୍ୱଗ୍ରାମ ରହିପୁର ଠାରେ ଥିଲେ । ଏଣୁ ସେ ମଧ୍ୟ ଆସିଲେ । ଶ୍ରୀ ବାଞ୍ଛାନିଧି ପଟ୍ଟନାୟକ ଗୋବରା ଠାରୁ ଆସିଲେ । ଗୋରକ୍ଷାଶ୍ରମସ୍ଥ

ଶ୍ରୀବତ୍ସ ଆର୍ଯ୍ୟ ପାଠଶାଳାର ବ୍ରହ୍ମଚାରୀ ବୃନ୍ଦ ଓ କର୍ମୀ ବାସୁଦେବ ଷଡ଼ଙ୍ଗୀ, ଶ୍ରୀ ଦଣ୍ଡପାଣି ମହାପାତ୍ର ଆସି ପହଞ୍ଚିଲେ । କୁଟୁମ୍ବ ମଧ୍ୟରୁ ସମସ୍ତ ପୁତ୍ରମାନେ ତା ପୂର୍ବରୁ ଜଗି ରହି ଥାଆନ୍ତି । ଜାମାତା, ଝିଅ, ନାତି ନାତୁଣୀମାନେ ସମସ୍ତେ ଥାଆନ୍ତି; କିନ୍ତୁ ଦୈବର ବିଡ଼ମ୍ବନା, ଦୁର୍ଭିକ୍ଷ ନାମକ ଯେଉଁ ନାତିଟିକୁ ତାଙ୍କର ଅନିଚ୍ଛା ସତ୍ତ୍ୱେ ପୋଷ୍ୟପୁତ୍ର ରୂପେ ଗ୍ରହଣ କରାଯାଇଥିଲା ସେ ଉକ୍ତ ସମୟରେ କଳିକତା ଯାଇଥିଲେ । ଅନ୍ତ୍ୟେଷ୍ଟି କ୍ରିୟା ବା ନରମେଧ ଯଜ୍ଞରେ ସେ ଯୋଗ ଦେଇ ନଥିଲେ ବଡ଼ ସମାରୋହରେ ତାଙ୍କର ନଶ୍ୱର ଦେହ ଶ୍ମଶାନ ଭୂମିକୁ ବାହାର କରାଗଲା ଏବଂ ସେଠାରେ ବୈଦିକ କର୍ମକାଣ୍ଡର ସଂସ୍କାର ବିଧି ଅନୁସାରେ ଘୃତ, ଚନ୍ଦନ କାଠ ଓ ଧୂପ ଇତ୍ୟାଦିରେ ନରମେଧ ଯଜ୍ଞ ସମାପ୍ତ କରାଯାଇ ଥିଲା । ଦେଶ ଓ ଜାତିଲାଗି ହୃଦୟରେ ଅନୁତାପ କରିବା ପାଇଁ ଓ ଗରିବମାନଙ୍କୁ ସମୟ ସମୟରେ ସାହାଯ୍ୟ ଦେବାକୁ ପର ଦୁଃଖରେ ଦୁଃଖୀ ଓ ପର ସୁଖରେ ସୁଖୀ ହେବାକୁ ଚିନ୍ତାମଣି ସୂର୍ଯ୍ୟ ବେଶୀ ଦିନ ରହି ପାରିଲା ନାହିଁ, ଚିରଦିନ ପାଇଁ ଅସ୍ତ ହୋଇଗଲା ।

-*-

# ସ୍ୱର୍ଗୀୟ ଶ୍ରୀବତ୍ସ ପଣ୍ଡାଙ୍କ ରଚିତ ପୁସ୍ତକାବଳୀ ପାଣ୍ଡୁଲିପି

୧- ଭୁବନେଶ୍ୱର ଦର୍ଶନ (ଦ୍ୱିତୀୟଖଣ୍ଡ) ୨- ଉତ୍କଳ ସାମାଜିକ ସମିତି
୩- ଅକୃତଜ୍ଞ ଓଡ଼ିଶା ୪- ଜାତୀୟ ଜୀବନ
୫- ବିକ୍ଷିପ୍ତ ଚିନ୍ତା (ବହୁ ପ୍ରବନ୍ଧ) ୬- ଦେଶ ମିଶ୍ରଣ ପ୍ରାର୍ଥନା
୭- ସମ୍ମିଳନୀ ସଭାପତି ୮- ଓଡ଼ିଆ ସଭା ଓ ଉତ୍କଳସଭା
୯- ସମ୍ପାଦକଙ୍କ ପଦତ୍ୟାଗ ପ୍ରସଙ୍ଗ ୧୦- ହରିନାମ
୧୧- ପୁରୋହିତ ପାଠ ୧୨- ପୋଷ୍ୟପୁତ୍ର
୧୩- ବିବାହ ଓ ନିଯୋଗ ୧୪- ତୀର୍ଥରକ୍ଷା
୧୫- ତୀର୍ଥଯାତ୍ରା (ଦକ୍ଷିଣାଞ୍ଚଳ) ୧୬- ରେଙ୍ଗୁନ ଯାତ୍ରା
୧୭- ହିନ୍ଦୁମାନଙ୍କର ବ୍ରାହ୍ମଣ ପ୍ରିୟତା ୧୮- ମାତୃଭାଷା
୧୯- ତୀର୍ଥଯାତ୍ରା (ଉତ୍ତରାଞ୍ଚଳ) ୨୦- କ୍ଷମାନୀତି
୨୧- ପାରଳାଖେମୁଣ୍ଡିରେ ଅପୂର୍ବ ମିଳନ ୨୨- ପୁରୁଷୋତ୍ତମପୁର
୨୩- ରାଧୁନାଥ ଓ ଭକ୍ତକବି ସଙ୍ଗୀତରତ୍ନା ୨୪- ଲୋକନାଥ ରାଏ
୨୫- ସାହିତ୍ୟ ରାଜ୍ୟର କର୍ତ୍ତା ୨୬- ମୟୂରଭଞ୍ଜ ମହାରାଜା
୨୭- ସ୍ୱର୍ଗୀୟ ମହୋଦୟଙ୍କ କମଳେଷୁ ୨୮- କବି ଚିନ୍ତାମଣି
୨୯- ଶ୍ରୀ ବୀର ବିକ୍ରମଦେବ ମହୋଦୟ ୩୦- କବି ଫକୀରମୋହନ
୩୧- ଖଲ୍ଲିକୋଟ ରାଜାବାହାଦୁର ୩୨- ଅଭିରାମ ଭକ୍ତ
୩୩- ନନ୍ଦ ସାମନ୍ତର ଜୀବନଚିନ୍ତା ୩୪- ପୁନର୍ମୁଦ୍ରିତ ଭବ
୩୫- ସଂସ୍କାରକ (୪ର୍ଥ ଖଣ୍ଡ) ୩୬- ନାରୀଧର୍ମ ସମାଲୋଚନା
୩୭- ଶ୍ରୋତା ଓ ବାଚସ୍ପତି ୩୮- ଜାତୀୟ ଜୀବନ
୩୯- ସମାଜ ସଂସ୍କାର ୪୦- ସଂସ୍କାର ବିଧି
୪୧- ଉତ୍କଳ ସମ୍ମିଳନୀ ତରଙ୍ଗ ପ୍ରଚାରକ ନିଯୁକ୍ତ

—*—

ଶ୍ରୀବସ୍ତ ପଣ୍ଡାଙ୍କ

# ସଂସ୍କାର-ସଙ୍ଗୀତାବଳୀ

ସ୍ୱୟମ୍ଭୂ ପରତ୍ପର ଅନାଦି ଅନନ୍ତ ନିର୍ବିକାର ଜ୍ଞାନନିଧି
ଗୁଣ ନିର୍ଗୁଣ ଆଦିକାରଣ ସୀମାତୀତ ଶକ୍ତିର ବାରିଧି,
ନିରାକାର ନିରୁପମ ନିତ୍ୟ ସତ୍ୟ ଶିବ ସୁନ୍ଦର ବିଭୂତି ।
ଜ୍ଞାନ-ଅଞ୍ଜନ ଭ୍ରମ ନାଶନ ବିଭୁ ପଦେ ଦୀନର ବିନତି ।

—*—

— ୨ —

ଅରେ ଭକ୍ତ କୃପାକର ପ୍ରଭୁ ନିରଞ୍ଜନ,
କୁସଂସ୍କାର ଘଶି ଯାଉ ଏ ଦେଶୁ ବନ୍ଧନ । ପଦ ।
କୁଳାଗ୍ରହ ଦେଶାଗ୍ରହ କରନ୍ତି କି ଅତ୍ୟାଚାର,
ନାଶିସେହି ଦୁରବସ୍ଥରେ ହରନ୍ତେ କଷଣ । ୧ ।
ଘୋର କୁସଂସ୍କାରେ ପଡ଼ି ଏଦେଶ ଯାଉଛି ସଡ଼ି,
କେତେ କାଳ ଏହି ଭାବେ କାଟିବୁଁ ଜୀବନ । ୨ ।
ହିନ୍ଦୁ ସମାଜେ କୁରୀତି ଦେଖି ଜନ୍ମେ କ୍ଷୋଭ ଅତି,
କି କରିବୁଁ ? ସେହି କୁଳେ ଲଭିଛୁଁ ଜନମ । ୩ ।

ତୁମ୍ଭଙ୍କୁ କଲେ ପ୍ରାର୍ଥନା ନଷ୍ଟେ ପ୍ରବଳ କାମନା,
ଭିଆଇଛ ଯେଣୁ ତୁମ୍ଭେ ଏ ବିଶ୍ୱ-ଭାବନା । ୪ ।

ଶ୍ରୀ ଜଗନ୍ନାଥ ପଣ୍ଡା-କୋଠପଦା

-*-

-୩-

କୃପା ନିଧାନ ହେ, କୃପା କି ନହେବ ଆଜି ।

ବିଷାଦ ସାଗରେ ମଣିବୁଡ଼ି
ତୁମ୍ଭେ ନଜାଉଲେ ଥାଉଁ ଥାଉଁ । ପଦ ।
ଶଙ୍ଖଚକ୍ର ଗଦା ପଦ୍ମ ଚତୁର୍ଭୁଜେ
ଝଲକଇ ଦାଉ ଦାଉ ।
ବିଧବା ବାଳାର ଦୁଃଖ ହରିବାରେ
ହୀନବଳ କି ସେ ବାହୁ ?
ଶୁଣିଥିଲି ପୂର୍ବେ ହରିଣୀ ବିପଦ
ହରିଥିଲ ସୁମରଣେ ।
ଅନାଥା ବିଧବା ଡାକଲେ ଆରତେ
ନ ଶୁଣୁଛ କି କାରଣେ । ୨ ।
କୁରୁସଭେ ଚଳେ ପାଞ୍ଚାଳୀ ବିବଶା
ଜାଣି ଲଜ୍ଜା ନିବାରିଲ
ନିଦାରୁଣ ପାପ ସ୍ରୋତେ ଭାସିଗଲୁଁ,
କୃପା କମ୍ପା ସମ୍ବରିଲ । ୩ ।

ଦାରୁଣ ଯନ୍ତ୍ରଣା ଆଉ କେତେ କାଳ
ସହିବାକୁ ଅଛୁ କର୍ମେ ।
ଧର୍ମେ ଧରଣୀସ୍ଥା ହୋଇଛୁ ଧରଣୀ,
ନିମଗ୍ନା ହେବ ଅଧର୍ମେ । ୪ ।

ଶ୍ରୀ ବାଞ୍ଛାନିଧି କବିଭୂଷଣ ।

-*-

-୪-

( କି ନାଦରେ ପ୍ରାଣ ସଙ୍ଗିନୀ- ବୃତ୍ତେ )

ଦେଖ ସେ ପୁଣ୍ୟ ନଗରୀ ମର୍ତ୍ତ୍ୟରେ ସ୍ୱରଗ ଶିରୀ,
ଯହିଁ ବିରାଜନ୍ତି ପ୍ରଭୁ ଜଗନ୍ନାଥ ନାମଧରି । ପଦ ।
ଦର୍ଶନେ ହୋଇ ଲାଳସୀ ହର୍ଷେ ମନ ଯାତ୍ରୀ ଆସି,
ମଠବାଡ଼ ସାହି ଗଳି ରହିଥାନ୍ତି ଛହିଁ ପୁରି । ୧ ।
ପଣ୍ଡା, ପଣ୍ଡା, ପଡ଼ିଆରି କରି ଅତ୍ୟାଚାର ଘୋର,
ଯାତ୍ରୀଠାରୁ ଭଣ୍ଡି କରି ପଇସା ନିଅନ୍ତି ଜୋରି । ୨ ।
ବଙ୍ଗ, ଆନ୍ଧ୍ର, ମାରୱାଡ଼ ଓଡ଼ିଆଙ୍କ ଫାନ୍ଦେ ପଡ଼ି,
ମଣ୍ଡପେ ମୁଣ୍ଡ କରୁଡ ଗଣି ଦଅନ୍ତି କଉଡ଼ି । ୩ ।
ଜାତିଭେଦ ନ କରିଣ ଶୁଦ୍ରଙ୍କୁ ବିପ୍ରେ ଧରି,
ଅବଢ଼ା ଲିରକାରି ଖାଆନ୍ତି ମନ ଖୁସିକରି । ୪ ।

ଏହେତୁ ପୁରୁଷୋତ୍ତମ ବ୍ରହ୍ମଙ୍କ ପବିତ୍ର ଧାମ
ବୋଲି ଖ୍ୟାତ ଜଗତରେ ରହି ଅଛନ୍ତି ବସ୍ତାର । ୫ ।
ଯଦି ଏହି ସମଭାବ ଭାରତରେ ବ୍ୟାପିଯିବ,
ବନ୍ଧୁ ଏକତା ବଢ଼ିବ, ଶ୍ରୀବସ୍ତ ଭବେ ବିଗ୍ରହ । ୬ ।

-*-

-୪-

( ଜଣା ଚଳନ୍ତି ଏଥର-ବୃତ୍ତରେ )

ଭାବ ନାହିଁ ବସି ଭାଇ, ଦେଶାନ୍ତର ମନେଧ୍ୟାୟି,
ଦେଶାନ୍ତର ସବୁ ଏହି କାଳକ୍ରମେ ବଦଳଇ । ପଦ ।
ଯୁଗେ ଯୁଗେ ଯୁଗାନ୍ତର ଧାରା ଅଟେ ସଂସାରର,
ରହେ ନାହିଁ କିଛୁ ଏହି ଜଗତରେ ଚିରସ୍ଥାୟୀ । ୧ ।
ଶ୍ରୁତି, ସ୍ମୃତି ଯୁଗଗତ ଲୋକେ ଆଉ ନ ପାଳନ୍ତି,
ପୁରାଣରେ ଭୁଲିଛନ୍ତି କାହାଣିରେ ମନଦେଇ । ୨ ।
ବିପ୍ରେ ତେଜି ଅଗ୍ନିହୋତ୍ର ଶିଖି କାନଫୁଙ୍କା ମନ୍ତ୍ର,
ଯକ୍ଷାନ୍ତରୁ ବୃତ୍ତିକଲେ ବାରଷିକ ଟଙ୍କାପାଇଁ । ୩ ।
ବ୍ରହ୍ମମସ୍ତ ଭାରତରେ ବୁଦ୍ଧ ଜନେ ପୁରୀ ଠାରେ,
ଦାରୁବ୍ରହ୍ମ ସ୍ଥାପିଦେଲେ ଜଗନ୍ନାଥ ନାମଦେଇ । ୪ ।
ଏହି ବ୍ରାହ୍ମଣ ଠାକୁର ପ୍ରତି ଦ୍ୱାଦଶ ବର୍ଷର
ଛାଡ଼ନ୍ତି ଜୀର୍ଣ୍ଣ ଶରୀର ନୂଆ କଳେବର ବହି । ୫ ।

ବିଦ୍ୟାଶିକ୍ଷା ଅଭିଳାଷୀ ଶ୍ରୋତ୍ରିୟ ବ୍ରାହ୍ମଣେ ଆସି,
ମୁକ୍ତିମଣ୍ଡପରେ ବସି ବେଦାନ୍ତ ଶାସ୍ତ୍ର ବୋଧାଇ । ୬ ।
ଆଜି ବିପ୍ର ନାମଧାରୀ କେତେ ଅବା କୁକ୍ଷିମ୍ଭର,
ପଇତା ଦେଖାନ୍ତି ଜୁଟି ଦର୍ଶକଙ୍କୁ ଭଣ୍ଡି ଦେଇ । ୭ ।
ବେଦଥିଲା ଶ୍ରୁତିଗତ ଶୁଦ୍ଧ କଣ୍ଠ ବହିର୍ଭୂତ,
ଏଣୁ ଶ୍ରୁତି ବୋଲି ତାର ନାମ ଅଛି ଖ୍ୟାତ ହୋଇ । ୮ ।
ତାର ଅନୁବାଦ ଆଜି କରି ସଭ୍ୟ ଇଂରେଜ ।
ଦେଖ ଦେଶାନ୍ତରେ ଦେଲେ ବ୍ରହ୍ମଜ୍ଞାନ ପ୍ରଚାରଇ । ୯ ।
ମାଟି ଘାଟ, ତେଲ ଜଡ଼ା ହୁଏ ନାହିଁ ଆଉ ଲୋଡ଼ା,
କରେସିନ କାଚ ଜଳେ କ୍ଷୁଦ୍ର ମନ୍ଦିରରେ ଯାଇ । ୧୦ ।
ବଡ଼ ଦେଉଳରେ ଆଜି ବିଦ୍ୟୁତ୍‌ବତ୍ତି ଦେଲେ ଖଞ୍ଜି,
ତହିଁ କଣ ପାଠ ହେବ କିଛି ଜଣାଯାଉ ନାହିଁ । ୧୧ ।
କାଳ ଅନୁସାରେ ଖାଇ, କର କର୍ମ ମନଦେଇ,
ପାଞ୍ଜି ଖୋଜି ବସିଲେତ ଉନ୍ନତି ପାଇବ ନାହିଁ ।

-*-

-୭-

( ବିଧିର ଅବଧି ବିଧାନ-ବୃତ୍ତିରେ )

ଦେଖ ଏ ଦେଶ ଆଚାର,
ଯା'ପଦେ ଲୋକ କରନ୍ତି ଜୁହାର

ଗଲା ଗୁଣ-କର୍ମଜ ମାନ, ହେଲା
ଯୋନିଜ ଜାତିଟି ସାର । ୧ ।
ବର୍ଜି ବ୍ରହ୍ମଚର୍ଯ୍ୟ ନିୟମ, ବାଲ୍ୟ
ବୟସେ ବିଭା ଦେବାର । ୨ ।
ବଟୁ ତେଜି ବେଦ ବିଜ୍ଞାନ ଭିକ୍ଷାର୍ଥେ
ବୁଲନ୍ତି ବାରଦ୍ୱାର । ୩ ।
ବିଧବାର ବିଭା ଦୂଷଣ,
ବୃଦ୍ଧ ବିବାହ ବଡ଼େ ସୁନ୍ଦର । ୪ ।
ପଣ୍ୟ ସ୍ତ୍ରୀ ପଛେ କରେ ଶିକ୍ଷା,
କୁଳାଂଗନା ରହେ ନିରକ୍ଷର । ୫ ।
ଦେଶାନ୍ତର ନାମେ କରନ୍ତି
ଜାତି କୁଳେ ପାପ ବ୍ୟଭିଚାର । ୬ ।

-o-

୭-

ଉତ୍କଳୀୟ ଭାତୃଗଣ, ଶୁଣ ଆଉ ମଉନ ।
କୂପ ମଣ୍ଡୂକ ସମାନ ନ କର ହେ ଗୁମାନ । ପଦ ।
ଭାଇ ଭାଇ ମଧ୍ୟେ ଭେଦ ଘଟିଅଛି ପରମାଦ ।
ଏକ ମନ ଏକ ପ୍ରାଣେ କର କାର୍ଯ୍ୟ ସାଧନ । ୧ ।
ଉପେନ୍ଦ୍ର, କବିସୂର୍ଯ୍ୟ, କୃଷ୍ଣସିଂହ ମହାରାଜ ।
ପ୍ରାଣପଣେ କରିଥିଲେ ସାହିତ୍ୟର ସେବନ । ୨ ।

ମାତୃଭାଷାର ମମତା ଯେବେ ନ କରିବ କେନ୍ତା ।
ସଭ୍ୟ ଜାତି ମାନଙ୍କରେ ହେବନାହିଁ ଗଣନ । ୩ ।
କୃଷି ଶିଳ୍ପ ବ୍ୟବସାୟ କରନାହିଁ କେବେ ହେୟ ।
ନାଶ ଜାତି ନର୍ଯାତନ ନୁହେ ଆର୍ଯ୍ୟ ବିଧାନ । ୪ ।
ବେଦ ସ୍ମୃତି ମୂଳାଧାର, ବୁଝ ତାର ସାରସାର ।
ଶୀଘ୍ର ଛାଡ଼ ଅନ୍ଧ ପରଂପର ରୀତି ପାଳନ । ୫ ।

-*-

୮-

( ଗଜରାଜ ଗମନୀ— ବୃତ୍ତରେ )

ପୂର୍ବାର୍ଯ୍ୟଙ୍କ ବଂଶର କର ବାରେ । ପଦ ।

ଏପରି ଉଦାସୀନ ରହିବ କେତେଦିନ,
ସବୁଠିଁ ହୋଇ ସାନ
କାମରେ ନାମରେ ମାନରେ ଧନରେ । ୧ ।

ବ୍ରହ୍ମ ବୈଶ୍ୟ କ୍ଷତ୍ରିୟ ଶୂଦ୍ରଜାତି ନଚୟ
ହୋଇଥିଲ ନର୍ଭୟ
ଗୁଣରେ କର୍ମରେ ଜ୍ଞାନରେ ଧ୍ୟାନରେ । ୨ ।

ଆଜ ଅସଂଖ୍ୟ ଜାତି, କୁଳାର୍ଯ୍ୟର କୁଖ୍ୟାତି
ହେଉ ଆର୍ଯ୍ୟ ସନ୍ତତି
ନଗଣ୍ୟ ଜଘନ୍ୟ ଜଗତ ଚକ୍ଷୁରେ । ୩ ।

ଜାତିଭେଦ ବିଧାନ, ଅଳୀକ ଅଭିମାନ,
କରେ ଦ୍ୱେଷ ପୋଷଣ,
ଘରେ ଘରେ ବନ୍ଧୁରେ ଜାତିରେ ଦେଶରେ । ୪ ।
ଶିକ୍ଷିତା ଲଳନାବର୍ଗ, ଦୁର୍ଗାବତୀ ପ୍ରଭୃତି
ପ୍ରକାଶ୍ୟେ ବିହରନ୍ତି
ଗୃହରେ ଦୁର୍ଗରେ ସଭାରେ ସମରେ । ୫ ।
ଅସୂର୍ଯ୍ୟଂ ପଶ୍ୟରୂପା ନଥିଲେ ତୁମ୍ଭ ଅପା,
ରମଣୀ ଏବେ କମ୍ପା
ସର୍ବଦା ଆବଦ୍ଧା ଗୃହରେ କୋଣରେ । ୬ ।
ପରାଶରାନୁଯାୟୀ ପୂର୍ବରେ ଥିଲା ଭାଇ,
ବିଧବା ବିଭା ଏଣୁ
ଘରେ ନଷ୍ଟିରେ ଷେଚ୍ଛାରେ ଦ୍ୱାପରେ । ୭ ।
କିନ୍ତୁ ଏଦେଶେ ଅଦ୍ୟ ବାଳିକା ହୋଇ ବାଧ୍ୟ
ଭୋଗେ ଚିର ବୈଧବ୍ୟ
କାତରେ ଅସ୍ଥିରେ ଦୁଃଖରେ ଶୋକରେ । ୮ ।
ନ ପାଇଲେ ବନିତା ସୁଶିକ୍ଷା ସ୍ୱାଧୀନତା,
ଅଧ୍ୟାପନ କ୍ଷମତା,
ଗୃହରେ ସ୍କୁଲରେ ନଗରେ ଦେଶରେ । ୯ ।
କଲେହେଁ ଆନ୍ଦୋଳନ ରାଜମନ୍ତ୍ରି ନନ୍ଦନ
ହେବକି ଇଂରାଜ ସମ
ଧୈର୍ଯ୍ୟରେ ବୀର୍ଯ୍ୟରେ ବଳରେ ବିଦ୍ୟାରେ ? । ୧୦ ।

-o-

୯- ( ବନ୍ଧୁ କଳଙ୍କ ଦୁର୍ବିଷ୍ଣୁର କୁରେ- ବୃତ୍ତେ )

ଭାଇ, କରୁଛ ଏକ ଦୁର୍ମତି ହେ
ପାପକୁ ତବ ନାହିଁକି ଭୀତି ହେ । ପଦ ।

ବରଜି ପୂର୍ବାଚାର, ବେଦାନ୍ତ ଧର୍ମସାର
ହରାଇଲ ଭାରତ ସୁଖ୍ୟାତି ହେ,
ନିର୍ମମ ନିରୂପମ, ସଚ୍ଚିଦାନନ୍ଦ ବ୍ରହ୍ମ
ତେଜି ଭଜୁଛ ଦାରୁ ମୂରତି ହେ । ୧ ।

ଚତୁର୍ବର୍ଣ୍ଣ ବିଧାନ ନ ବୁଝି ତାର ମର୍ମ
କଲଟି ପୂର୍ବଜାତି ବିକୃତ ହେ,
ଗୁଣ କର୍ମ ବିଚାର ଆଉ ନାହିଁ କାହାର,
ଜନ୍ମମାତ୍ରେ ହୁଏ ଅଭିଜାତି ହେ । ୨ ।

ବ୍ରହ୍ମବାଦୀ ବ୍ରାହ୍ମଣ ଅଛନ୍ତି କେତେ ଜଣ
ପାଇ ଶିକ୍ଷା ସଂଯମାଦି ଧୃତି ହେ,
ନାମଧାରୀ ବ୍ରାହ୍ମଣ ବୁଲନ୍ତି ପଣ ପଣ
କରିବାକୁ ଯାଜନାଦି ବୃତ୍ତି ହେ । ୩ ।
ବିଦ୍ୟାଶିକ୍ଷା କାରଣ, ବ୍ରହ୍ମଚର୍ଯ୍ୟ ନିୟମ
ବର୍ଜି ବାଳକେ ବିଭା ହୁଅନ୍ତି ହେ,
ବାଳିକାକୁ ସର୍ବଦା, ବଳେ ରଖି ବିଧବା
ବୃଦ୍ଧକୁ ବିଭା ଦେବା କି ବିଧି ହେ । ୪ ।

-○-

୧୦- ( କେତେ ମନ୍ଦ ପଣ ମୁଁ କଲି- ବୃତ୍ତେ )

କର ଦୂର ଏହି କୁଗତି ଆଦେ ଘଇ,
ଅଟ ତୁମ୍ଭେ ପର ଋଷି ସନ୍ତତି ।
ହେଜ ତୁମ୍ଭ ଆର୍ଯ୍ୟ ଜାତିର ସ୍ମୃତି,
ଅଛୁ ପୃଥି ଯେଉଁ ଖ୍ୟାତି । ପଦ ।

ଗୁଣ ଜ୍ଞାନ ତେଜ ଜନ୍ମ ମାତ୍ରେ ଆଜ
ହେଲ ସିଧା ଦ୍ୱିଜଜାତି,
ନୁହେ ବାଲ୍ୟସୁତ ପଇତାରେ ପୂତ,
ହେଲେହେଁ ବସ୍ତ୍ର ସନ୍ତତି । ୧ ।

ଶିଖିଲେ ବେଦାନ୍ତ ହେବଟି ନସ୍ତାତ,
ସୂତ୍ରରେ ବ୍ରହ୍ମନ୍ ନାହିଁ ।
କୁମ୍ଭଟି, କାଳଂଗୀ, ପଇତା ପଙ୍କାନ୍ତ,
ସେତ ବ୍ରାହ୍ମଣ ନୁହନ୍ତି । ୨ ।

ନ ଥା ବସ୍ତ୍ର ଛୁଆଁ ନ ହେବାରୁ ଭୂଆ
ବେଦରୁ ଛୁଟି ଯାଆନ୍ତି ।
ପିତା ସଙ୍ଗେ ଯାଇ ପ୍ରବୋଧି କହଇ
ବଖ ଦେବାକୁ ଝଟତି । ୩ ।

ବାର ବର୍ଷ ଦିନ ବସ୍ତ୍ର ହୁଏ ସୁନ୍ନୁ
ବାଲ୍ୟାବସ୍ଥା ବୃଥା କରି ।
ଶିଖିବା କାଳରେ ଗୃହ ଜଞ୍ଜାଳରେ
ପଡ଼ଣ ହରଏ ମତି । ୪ ।

-୦-

-୧୧-

( ଶାବର ସଙ୍ଗୀ ଯିବକ ମୋ ମନରୁ- ବୃତ୍ତେ )

ଗ୍ରାଣ୍ଡରେ ଏହି ଅନ୍ଧ ପରଂପରକୁ ।

ଦେଶାଗ୍ରର କୁସଂସ୍କ ଦେଇ ନ ପାରେ ମୁକ୍ତି,
କୁଳାଗ୍ରର କଳଙ୍କ ନଏ ନାହିଁ ସ୍ୱର୍ଗକୁ । ୧ ।

ଘରକେ ଜାତିଭେଦ ଅଟେବଡ଼ ପ୍ରମାଦ
ଘାଇ ଘାଇ ମଧ୍ୟରେ ନାଶିଲା ଏକତାକୁ । ୨ ।

ସାତକର୍ଷର ସୂତ, ବ୍ରତ ମାନେ ନଷ୍ଟାତ,
ବେଦରୁ ଉଷିଯାଏ ବିବାହ କରିବାକୁ । ୩ ।

ବାଳିକା ହୋଇ ବାଧ ଯୋଗେ ତର ବୈଧବ୍ୟ
ଜାନେ ପବିତ୍ର କୁଳ କଳଙ୍କ କରିବାକୁ । ୪ ।

ଧନ ଲୋଭରେ ପିତା ବକେ ଶିଶୁ ଦୁହିତା
ବିବାହ ଛଳନାରେ ବୟୋଧିକ ବୃଦ୍ଧଙ୍କୁ । ୫ ।

ବେଦାନ୍ତ କାବ୍ୟ ଶାସ୍ତ୍ର ପଢ଼ିବା ଥାଉ ଦୂର
ନାରୀମାନଙ୍କୁ, ମନା ଅକ୍ଷର ଶିଖିବାକୁ । ୬ ।

-୦-

-୧୨-

( କାହିଁକି ପ୍ରଭୁ ମତେ କରୁଛ ମାୟା- ବୃତ୍ତେ )

କାହିଁକି ଭାଇମାନେ, କର ଅମାତ,
ନୁହକି ତୁମ୍ଭେ ଆର୍ଯ୍ୟ ସନ୍ତତି । ପଦ ।

ପୂର୍ବ ଗୌରବ ମନରେ ଭାବ,
କର ବର୍ତ୍ତମାନ କୁତ୍ସିତ ଯନ୍ତ । ୧ ।

ଜାତି ପ୍ରଭେଦ କଲା ଉଚ୍ଛେଦ
ଭାଇ ମଧ୍ୟରେ ଏକତା- ଭିତ୍ତି । ୨ ।

ବିଧବା ବାଳା ବିରହ ଜ୍ୱାଳା
ସହ୍ଯ ନ ପାରି ହୁଏ ଅସତୀ । ୩ ।

ବାଲ୍ୟ ବିବାହ କି ଅନର୍ଥପ୍ରଦ !
ବିଦ୍ୟା ଶିକ୍ଷାର ସାଧଇ କ୍ଷତି । ୪ ।

କର ସଂସ୍କାର ଏ ଦୁଷ୍କାର୍ଯ୍ୟର
ଯେବେ ଭାବୁଛ ଜାତି ଉନ୍ନତି । ୫ ।

-୦-

-୧୩-

( ମଧ୍ୟ ମଣ୍ଡଳୀ ଭୁ ନ ମାଣ ମାଉରେ- ବୃତ୍ତରେ )

ଉତ୍କଳୀୟ ଭାଇ, ବିଗୁର କରହେ । ପଦ ।

ଶ୍ରୁତି ସ୍ମୃତି ପଢ଼ିତି ପୂର୍ବର ରୀତି ମତି
ବୁଝି ହେବ ତାର ସାରସାର ହେ । ୧ ।

ପୂର୍ବ ଜାତି ବର୍ଜି ଅସଂଖ୍ୟ ଜାତି ସର୍ଜି
କଲଟି ଜାତୀୟତା ଛାରଖାର ହେ । ୨ ।

ବର୍ଜି ବ୍ରହ୍ମଚର୍ଯ୍ୟ ଯେ ରୀତି ଥିଲା ଆର୍ଯ୍ୟ
ପ୍ରକୁଷ ହୁଏ ବଣ ବାରମ୍ବାର ହେ । ୩ ।

ବାଳକନ୍ୟା ବିଧବା ନହୁଏ ଆଉ ବିଭା
ବିରହେ ଝୁରୁଥାଏ ନିରନ୍ତର ହେ । ୪ ।

ଆମିଷ ଭୁଞ୍ଜେ ଯୁବା, କରେ ବାଳବିଧବା
ଉପବାସ ଏକାଦଶୀ ନିରାହାର ହେ । ୫ ।

ନାଟକ କାବ୍ୟ ଶାସ୍ତ୍ର ଶିଖିବା ଥାଉ ଦୂର,
ନାରୀମାନେ ରହନ୍ତି ନିରକ୍ଷର ହେ । ୬ ।

-*-

-୧୪-

( କାହିଁଅଛ ସୁନ୍ଦର- ବୃତ୍ତରେ )

ଆହା, ଏକ ଅନାର୍ଯ୍ୟ ଗତି ହେ ଆର୍ଯ୍ୟ,
ହେ ଭାଇ ଉତ୍କଳୀୟ ତେଜ ଏହି କୁତ୍ସିତ କାର୍ଯ୍ୟ । ପଦ ।

ନୀତି ବୃତ୍ତିରେ, ରାଜନୀତିରେ
ବିଦ୍ୟାଶିକ୍ଷାରେ, ରାଜ କାର୍ଯ୍ୟରେ,
କାରିଗରି କୌଶଳରେ କି ଅବା ବାଣିଜ୍ୟରେ
ଉତ୍କଳବାସୀ ଭୂଲରେ ଆଜି ହେଲେ ହୀନ ବୀର୍ଯ୍ୟ । ୧ ।

ସମାଜର ମାଚ ନିୟମ ପାଳି ହେଲେ ନିକୃଷ୍ଟ ଅଧମ,
ପୂର୍ବ ଖ୍ୟାତି କଲ କ୍ଷୟ । ୨ ।

ଘରେ ଘରେ ଜାତିଭେଦ କରି ଐକ୍ୟ-ପଥ ରୁନ୍ଧି
ଘଟାଇଲ ଅନ୍ତର୍ଦ୍ଧ୍ୱନ୍ଦ୍ୱ । ୩ ।

ତେଜ ଏବେ ଜାତି ଅଭିମାନ,
କର କୁସଂସ୍କାର ବରଜନ
ବିବିଧ ବିଦ୍ୟାରେ ହୋଇଣ ନିପୁଣ
ଦେଶେ ସତ ଶିକ୍ଷା କର ବିନିମୟ । ୪ ।

-*-

-୧୪-

( ଏପରିରେ ସନ୍ଧିରେ ମନ୍ତ୍ରିରେ- ବୃତ୍ତାଂର )

ଏପରି ହେ ଭାଇହେ, କେବେହେଁ
ପୂର୍ବରେଶୁଣା ନଥିଲି । ପଦ ।

କନ୍ୟା ଛ ବର୍ଷର ନବ ବର୍ଷ ବର
ବିଭା ଦେବାର କଠୋର ପାପର ବ୍ୟାପାର । ୧ ।

ବ୍ରାହ୍ମଣ ସୁତ ହେବା ମାତ୍ରେ ବ୍ରତ
ହୁଏ ନିଷ୍ଠାତ, ନୁହେଁତ ବେଦାନ୍ତ ଶିକ୍ଷିତ । ୨ ।

କୁଳୀନା ରମଣୀ ହୁଅଇ ଗନ୍ଧର୍ଣୀ,
ବିଦ୍ୟା ନ ଜାଣି ନଶୁଣି ଅଜ୍ଞାନୀ, ମଜ୍ଞାନୀ । ୩ ।

ବିଧବା ଯୁବତୀ ବିବାହ ନୁହନ୍ତି,
ହୋଇ ଅସନ୍ତ ହୋଗନ୍ତି ସମ୍ପ୍ରତି ବିପତ୍ତି । ୪ ।

ଏହି ଅତ୍ୟାଚାର ଶୀଘ୍ରକର ଦୂର,
ଯଦି ଭୂମିର ଜାତିର ଆଦର ବିସ୍ତର । ୫ ।

-*-

-୧୭-

ଭ୍ରାତୃ ମଣ୍ଡଳ ନୁହଁ ସମ୍ଭାଳ
ଜାତିର ଅର୍ଗଳ । ପଦ ।

ଜାତି ପ୍ରଭେଦ, ଭ୍ରାତୃ-ବିଚ୍ଛେଦ
କଲା ଉଚ୍ଛେଦ ଏକତା ପ୍ରଣାଳୀ ।

ଭାରତେ ନତ ଅସଂଖ୍ୟ ଜାତି
କରୁଛି ଥାନ୍ତି ପରସ୍ପର କଳି । ୨ ।

ବିଭବ ନାଶି ବିଦ୍ୱେଷ ପୋଷି
ଭାରତବାସୀ ହେଲେଣି କାଙ୍ଗାଳ । ୩ ।

ଜାତି ବିନାଶି ଜାପାନ ବାସୀ
ହେଲେ ଯଶସ୍ୱୀ ସାହସରେ ବଳି । ୪ ।

ଯେବେ ରଖିବ ବିଭିନ୍ନ ଭାବ
ନଷ୍ଟପ୍ରାୟ ହେବ ନାହିଁ ତାଙ୍କ ଭଳି । ୫ ।

ତେଜ ବାଣିଜ୍ୟ ଶିଳ୍ପିଙ୍କ କାର୍ଯ୍ୟ
ଭାରତ ରାଜ୍ୟ ହେଲା ନିଃସଙ୍ଗାଳୀ । ୬ ।

ଜାତି ବନ୍ଧନ ଦେଲାଟି ମୂଳ
ପବିତ୍ର କୂଳ ଶୂନ୍ୟମାରେ କାଳି । ୭ ।

ଜାତି ତେଜିଲେ ବିଦ୍ୟା ଶିଖିଲେ
ଉନ୍ନତ ହେଲେ ହେବ, ନୁହ ଭଳି । ୮ ।

-*-

୧୭- (ହୋଇଥାରେ ବେଶ କୁଞ୍ଜକୁ ଯିବୁ ପରି-ବୃତ୍ତରେ)

ଭୁଲ ନାହିଁ ଭାଇ, ଆଜ ଏ କୁଳାଚାରେ,
ଭଲରୂପେ ବିଚାର ସୁଚିତ୍ତରେ ବାରେ । ପଦ ।
ସ୍ଥିର କୁଳ ନୁହେ କେବେ ବଳିଆର କାଳ ଆଗେ,
ଦେଖ ପୂର୍ବକାଳ କୁଳ ପୁରାଣ ଥରେ । ୧ ।
ପୂର୍ବେ ସର୍ବେ ହେଲେ ଏକମାତ୍ର କୁଳରୁ ତ ଜାତ
ଜନ୍ମି ମନୁ ମହାତ୍ମାଙ୍କ ଏକ ଉଦରେ । ୨ ।
ଜ୍ଞାନ, ଧ୍ୟାନ, ଧର୍ମ, କର୍ମ ଭେଦ ହେତୁ ବର୍ଣ୍ଣ ଭେଦ,
ଧରାଯାଉଥିଲା ଏକ ପରିବାରରେ । ୩ ।
ପ୍ରାକୃତିକ ଜନ୍ମଗତ ଭେଦ ଶ୍ରେଣୀ ଉଚ୍ଚ ନୀଚ
ନଥିଲା ତ କେବେ ଏହି ଆର୍ଯ୍ୟ ଜାତିରେ । ୪ ।
ଆଜି ତେଜି ବିଦ୍ୟାଶିକ୍ଷା ବ୍ରାହ୍ମଣେ ମାଗନ୍ତି ଭିକ୍ଷା
ବାନ୍ଧି ଝୁଲି ବୁଲି ବୁଲି ଇତର ଦ୍ୱାରେ । ୫ ।
ନନ୍ଦ, ସାନ୍ତ, ମିଶ୍ର, ପାତ୍ର ଆଜି କେତେ ପରସ୍ପର
ଦ୍ୱନ୍ଦ କରୁଛନ୍ତି ଜନ୍ମ—ଅଭିମାନରେ । ୬ ।

-*-

୧୮- ( ଆସ ଆସ ପ୍ରାଣକୁ ବର ବିରନା-ବୃତ୍ତରେ )

ଛାଡ଼ ଛାଡ଼ ଏ ଦୁଷ୍ଟ ଦେଶ ଆଚାର,
ପୂର୍ବାଚାର କର ବିଚାର । ପଦ ।

ଶାସ୍ତ୍ର ବିରଚନା ଅଟେ ଅଧରମ,
ମାତ୍ର ନିପୁଣ ବୁଧ ବଚନ
ମନରେ ତୁମ୍ଭର ହେଜ ସତ୍ତ୍ୱର । ୧ ।

ବିପ୍ର ଦଶବିଧ ସ୍ମୃତିର ପ୍ରସିଦ୍ଧ-
ପଞ୍ଚ ଦ୍ରାବିଡ଼ ପଞ୍ଚ ଗଉଡ଼
ଅଛନ୍ତି କଥିତ ଆର୍ଯ୍ୟ ଜାତିର । ୨ ।

ଉତ୍କଳେ ବିଭିନ୍ନ ଜାତିରେ ବଞ୍ଚିନ୍ତି,
ହିଂସ ପୋଷଣ କରନ୍ତି ପୁଣ
ନାହିଁଟି ତାଙ୍କର ଐକ୍ୟ ବିସ୍ତର । ୩ ।

ଅନ୍ୟାନ୍ୟ ଗଉଡ଼ ନତୁବା ଦ୍ରାବିଡ଼
ମଧ୍ୟରେ ସାନ କି ଅବା ବଡ଼
ପ୍ରଭେଦ ନଥାଏ ଜାଣ ନିକର । ୪ ।

-*-

-୧୯-

( ଗୃଧ୍ରାନ କଣ ଗୋଣ ବୃତ୍ତେ )

ବିସ୍ମର କର ଭାଇ, ତୁମ୍ଭ ଚିତ୍ତରେ ବାରେ
ଥିଲା ଯେ ମାତ୍ର ନିଦ୍ଧମ ପୂର୍ବ କାଳରେ । ପଦ ।

ବ୍ରାହ୍ମଣେ ଶିକ୍ଷା ଦିଅନ୍ତି ପୁଣି ଦୀକ୍ଷା
ଭିକ୍ଷା ପାଇ ଭକ୍ତି ଘେନି ପ୍ରତି ଗୃହରେ । ୧ ।

କାକୁତି କରି କେବେ ମାଗନ୍ତି ନାହିଁ
ଧନାଶାରେ ମୃଷ୍ଟି ଭିକ୍ଷା ଅନ୍ୟ ଗୃହରେ । ୨ ।
ଯାଚଜ୍ଞା କରି ଭିକ୍ଷୁ ବା ବ୍ରହ୍ମଗୃହୀ
ଜୀବ ମାତ୍ର ରକ୍ଷା କରେ ବିନା ଲୋଭରେ । ୩ ।
କୁଟୁମ୍ବୀ ଗୃହୀ ଭିକ୍ଷାର୍ଥେ ବୁଲେ ନାହିଁ
ଲୋଭ ପରବଶ ହୋଇ ଦ୍ୱାର ଦ୍ୱାରରେ । ୪ ।
ଭିକ୍ଷାର ମର୍ମ ନ ବୁଝି ଅଧରମ
କର ନାହିଁ କେବେ ଭାଇ, ଧନ ଆଶାରେ । ୫ ।

-*-

-୨୦-

( ଊର ନାହିଁ କହେ, ଚର ତରୁଣୀ- ବୃତ୍ତ

ଦେଖ ଭାଇ, ଆଜ ବ୍ରାହ୍ମଣ ମାନଙ୍କ ଗତି
ଏମାନେ ଅଟନ୍ତି ପର ଆର୍ଯ୍ୟ ଋଷି
ମୁନିମାନଙ୍କ ସନ୍ତତି । ପଦ ।
ଶାସନୀ ବ୍ରାହ୍ମଣ କରନ୍ତି ଗୁମାନ
ସାମନ୍ତ ଶ୍ରୋତ୍ରିୟ ବୋଲି ।
କଳ୍କୁ ଚଣ୍ଡ ଦ୍ୱାରେ ପୁଣି ବେଶ୍ୟାଘରେ
ଦାନ ନେଇ ଥାନ୍ତି ବୁଲି । ୧ ।

କାହୁଁ ପ୍ରେତପଣା ହେବା ମାହେ ଶୁଣ।
ଏମାନେ ଯାଆନ୍ତି ଚହିଁ ।
ଝାଇପେଟ ଭରି କଲକପ୍ୟା କରି
* ଖଇ, ଦହି ପ୍ରଭୃତି ନଅନ୍ତି *ସାମଗ୍ରୀ ବହି । ୨ ।
ବିପ୍ର ବେଦାଭ୍ୟାସ ଗ୍ରୁଡ ହୁଏ ବଣ
ଶୂଦ୍ର ସେବାରେ ନରତ,
ଲୋଭ ପରବଶ ହେବାରୁ ବିଶେଷ
କରଇ କର୍ମ ଦୂଷିତ । ୩ ।
କେତେ ଜଣ ପୁଣି ଗ୍ରାମର ଅଗ୍ରଣୀ
ହେଲେହେଁ ଗଣ୍ଡ ମୂରୁଖ,
ଅନ୍ୟଦ୍ୱାରେ ଯାଇ ନଖାଆନ୍ତି ବୋଲି
କହୁ ଥାନ୍ତି ଘର ଟେକ । ୪ ।
କୃଷି କାର ବାର କଣ କେତେ ବିପ୍ର
ଅର୍ଜିବାରୁ ସଦ୍‌ବୃତ୍ତି,
ଦୁଷ୍ଟ ଦୁରାତ୍ମା ଶାସନ୍ତି ତକାଙ୍କ
କରନ୍ତି ତାଙ୍କୁ ଘୃଣିତ । ୫ ।

-*-

୨୧- ( ମୁ ବାରଲ ହେଉ ଏକକ ଟୋ- ବୃତ୍ତରେ )

ଧିକ ସେ ଶାସନୀ ବ୍ରାହ୍ମଣଙ୍କୁ
ଧିକ ତାଙ୍କ ଜାତ୍ୟଭିମାନଙ୍କୁ ।
ଧିକ ପୁଣି ହେଉ ତାଙ୍କ ଭିକ ମଗା
ଦାନ ନେବାର ଗୁମାନକୁ ।
ଏମାନଙ୍କ ମଧ୍ୟରେ ନିରକ୍ଷର
ଥାଆନ୍ତି ପୁଣି କେତେ ଜଣାଣି ଦାର,
ଏମାନେ ନିଜକୁ ବ୍ରାହ୍ମଣ ବୋଲିଣ
କହୁଥାନ୍ତି ଠେକ ବଚନକୁ । ୧ ।
'ଉତ୍ତମ ଭିକ୍ଷୁକ ବିପ୍ର' ବୋହାଇ ଦେଇ
ଦ୍ୱାର ଦ୍ୱାର ବୁଲନ୍ତି ଯାଇ;
ଭାଣ ପରିବାର ଘରେ ଜଗି ଥାନ୍ତି
ଗୃହିଁ ମାତ ବୃତ୍ତି ଅର୍ଜନକୁ । ୨ ।
କେତେ ଜଣ ଅବା ପାଞ୍ଜି କ ଖୋଜ
ଯୋଗ ଯାହା ତକ ନେଇଣ ବୁଝି ।
ଘରେ ଘରେ ବୁଲ୍ ଥାନ୍ତି ଭାଟ ପରି
କହି ଦିନ ବାର ବିଧାନକୁ । ୩ ।
ସଙ୍କଳପ ବିଧି କରି ବା କେହି
ଶୂଦ୍ର ଘରେ କର୍ମ କରନ୍ତି ଯାଇ,
ଚାଉଳ ବୁଜୁଳା ନେଉଥାନ୍ତି କହି
ଦେଇ କର ଆଶୀର୍ବଚନକୁ । ୪ ।

ପୂଜା, ବ୍ରତ, ବିବାହ ଶୁଦ୍ଧି, ଶ୍ରାଦ୍ଧ
ପାଠରକ କରି ଶୁଆ ପଠନେ ସାଧି
ଲେଖେ ଜାକ ପୋଥି ପଢ଼ି ବସ୍ତ
ଯେଣ ଯାଉଥାନ୍ତି କରି ଯାଜନକୁ । ୫ ।
କେତେ ସାମନ୍ତ ଶ୍ରୋତ୍ରିୟ ପଣ୍ଡିତ,
କିନ୍ତୁ କୁସଂସ୍କାର-କର୍ମେ ଜଡ଼ିତ,
ଗଣ୍ଡରେ କୁଣ୍ଡଳ ଦୋଳାଇ କରନ୍ତି
ଶ୍ରୁତି ସ୍ମୃତି ଅନୁଶୀଳନକୁ । ୬ ।
ବାପା କୂପ ଖୋଳାଇ ଥିଲେ ବୋଲି
ପିଇବା ଏବେ ଚହୁଁ ପଙ୍କ ଗୋଳି,
ଏହି ରତି ମୂର୍ଖ ପୂଜ୍ୟ ହୁଏ ଯାହିଁ
ବେଦ ମଣ୍ଡପରେ ଆସନକୁ । ୭ ।

-*-

୨୨ ·

ମାତ୍ର ଉଠ ଜାତକୁ ନୟହିଁ ହେ ପ୍ରିୟ ଭାଇ । ପଦ ।
ଥିବ ଯେବେ ଅଭିମାନ ଜନମିବ ଦିବ୍ୟ ଜ୍ଞାନ,
ପୂର୍ବେ କରିବେ ଆହ୍ୱାନ କୁସଂସ୍କାରେ ନେବେ ଧ୍ୟାନ,
ଏହା ବିନା ଅନ୍ୟ ଗତି ନାହିଁ ହେ । ୧ ।
କରିଦେବା ପରିଷ୍କାର ଏଡ଼େ ଜାତିସ୍ୱ ବିକାର,

ହେଲେ ହେଉ ଏକାକାର କାହିଁପାଇଁ ଭୟ ଆଉ,
ରଖେ ପଣ ଗୁରୁ ପଦ ଧ୍ୟାୟି ହେ । ୨ ।
ଜଗତେ ନାହିଁ ପ୍ରଭେଦ   କ କହୁଛୁ ତୁମ୍ଭ ବେଦ,
ବର୍ଣ୍ଣରେ ମଧ୍ୟ ଅଭେଦ,   କମ୍ପା ଜନମାଅ ଖେଦ,
ଗୁଲ ଜାଣନ୍ତୁ ସଙ୍ଗୀତ ଗାଇ ହେ । ୩ ।
ଜାଣସ୍ତୁ ପ୍ରେମନ୍ତ୍ରୀ ସାର   ପି ପୀଲକୁ ଶିକ୍ଷାକର,
ଜାତିନଷ୍ଟ ମର୍କଟର   ଜା ତି ଘୃଣା ପରିହର,
ସାହା ହେବେ ନଷ୍ଟେ ରମାପାଇଁ । ୪ ।

ଶ୍ରୀ ବାଞ୍ଛାନିଧି କବିଭୂଷଣ

-*-

୨୩- ( ପ୍ରଣାବନ୍ଧୁରେ, କୋକନଦ- ବୃତ୍ତେ );

କୃପାସିନ୍ଧୁ ହେ,
ଜାତି ଅଭିମାନ ନରେ ଦଅ କୃପା ବନ୍ଧୁ । ଘୋଷା ।
ପୂର୍ବକାଳ ଜାତି ଚତୁଷ୍ଟୟ
କଲ୍ ଆଜ ମାତ୍ର ବିପର୍ଯ୍ୟୟ,
ହେଲ୍ ଏକତାର ଅନ୍ତରାୟ,
ରକ୍ଷାକର ପ୍ରଭୁ, ଜାତି- ବିଦ୍ୱେଷ ଦ୍ୱନ୍ଦ୍ୱ ହେ । ୧ ।

ମନେ ରଖି ପ୍ରଭେଦ ଧାରଣା
କଲେ ଜାତି ଅସଂଖ୍ୟ ସୃଜନା,
କରି ନରଙ୍କେ ବୈରି କାମନା
ହରାଇଲେ ଜାତିସ୍ଵତା ଭାରତେ ହିନ୍ଦୁ ହେ । ୨ ।
ମାତ୍ର ନିଷ୍ଠା ନିୟମାନୁସାରେ,
ଗୁଣ କର୍ମ ଧର୍ମ ବତ୍ସଳରେ
ଅଭିଜାତି ହେଲେ ସମାଜରେ
ସର୍ବେ ହେବେ ଏକତାର ସୂତ୍ରରେ ବନ୍ଧୁ ହେ । ୩ ।
ହେଉ ଆର୍ଯ୍ୟ ଜାତି ବେଦ ମର୍ମ,
ତେଜି ଦେଲେ ଏହି ଭେଦ କର୍ମ
ନାଶି ଜନ୍ମଗତ ଜାତି- ଭ୍ରମ
ତବେ ହେବ ଭାରତରେ ଉନ୍ନତି-ଇନ୍ଦୁ ହେ । ୪ ।

-*-

୨୪-

( କାଳନ୍ଦୀ କୂଳକୁ ମୋ ସଂଖାଳି ବୁଲେ )

ଛାଡ଼ ଭାଇ, ଏହି ଅଭିଜାତି ଖ୍ୟାତି ହେ । ପଦ ।

ନିଜ ପୁରୁଷାର୍ଥ ଛାଡ଼ି ପୂର୍ବ ବଂଶ ଯଶ ବାଢ଼ି
ବସିଲେ ପାଇବ ନାହିଁତ ଉନ୍ନତି ହେ । ୧ ।
ନିଜ ଶକ୍ତି ପରାକ୍ରମ ସ୍ଵନାମ ସିନା ଉତ୍ତମ,
ପୂର୍ବ ବଂଶ ଟେକ ଅଧମ ନିହାତି ହେ । ୨ ।

କେଉଁ କାଳରେ ଶାସନ ପାଇ କେଉଁ ମହାଜନ
ରଖି ଯାଇଥିଲେ ବୋଲି ଭୂସମ୍ପତ୍ତି ହେ । ୩ ।

ଯଦ୍ଧ ଧଡ଼ ନାମଧାରୀ ମୂର୍ଖ ଦାନୁଆଁ ଭିକାରୀ
କହେ ନିଜ ଟେକ ଫୁଲାଇଣ ଗୁଡ଼ ହେ । ୪ ।

କହେତୁ ବ୍ରାହ୍ମଣ ଜାତି କଶ୍ୟପ ଋଷି ସନ୍ତତି
ହେବ ନାହିଁ ତାଙ୍କପରି ମହାପତି ହେ । ୫ ।

ନିଜର ଗୁଣ ଗରିମା ଦେଖାଅ ଥିଲେ ମହିମା
ତେବେ ରଖି ଯିବ ପୂର୍ବ ବଂଶ ଖ୍ୟାତି ହେ । ୬ ।

-*-

୨୫-

( ବାନ୍ଧବ ମାନ କାହିଁକି ତୋରରେ-ବୃତ୍ତେ )

କାହିଁକି ଭାଇ, ଭାବନା ନାହିଁ ହେ
ତୁମ୍ଭ ଅନ୍ତଃକରଣରେ । ଘୋଷା ।

ଘରେ ଘରେ ଜାତିଭେଦ ଅଛଇ ବଡ଼ ପ୍ରମାଦ
ଜାତିପୂତା ନାଶ କରଇ,
ବହିର୍ଭୂତା କରି ସୃଷ୍ଟି ଏକତାକୁ କରେ ନଷ୍ଟ,
କରି ଦ୍ୱେଷ ହିଂସା ସୃଷ୍ଟି ଉନ୍ନତିକି ହଟାଇ । ୧ ।
ସ୍ମୃତି ନଯୁମାନୁଯାୟୀ ହସ୍ତ ଦଶବିଧ ଭାଇ
ଶାଖା ଶ୍ରେଣୀ ଭେଦର ନାହିଁ,

ଆଜି ସାମନ୍ତ, ଦାନୁଆଁ — ସାଉ, ସାରୁଆ, ହଳୁଆ
ପାଡ଼ିଆ ପୁଣି ଝଡ଼ୁଆ ଜାତି ଅଡ଼ୁଆ କରଇ । ୨ ।
ଜଳ ବାୟୁ ପ୍ରଭେଦରେ — ଦଶ ବିଧ ବିଦେଶରେ
ସ୍ୱଭାବରେ ସୃଷ୍ଟି ହୁଅଇ,
ଖାଦ୍ୟ ପେୟର ପ୍ରଭେଦ — ଦୂର ଯାହାଙ୍କ ଆପଦ
ପରିଣୟାଦି ସମ୍ବନ୍ଧ ସିନା ଅସାଧ୍ୟ କରଇ । ୩ ।
କିନ୍ତୁ ଉତ୍କଳୀ ମଧ୍ୟରେ — ଖାଦ୍ୟ ବା ରୀତି ନୀତିରେ
କିଛି ମାତ୍ର ପ୍ରଭେଦ ନାହିଁ,
ଏସମାନଙ୍କ ବନ୍ଧୁଭାବ — ପରସ୍ପର ସଦ୍ଭାବ
ଜାତୀୟତା ବଢ଼ାଇବ, ଏଥିରେ ସନ୍ଦେହ ନାହିଁ । ୪ ।
ଭଲେ ଜାତି ବିନାଶନ — ହେବ ଏକତା ବର୍ଦ୍ଧନ
ମିଳନର ମାର୍ଗ ଫିଟାଇ,
ପୂର୍ବ ଗୌରବ ତପନ — ଭାରତ ଗଗନେ ପୁଣ
ଉଦୟ ହେବଟି ଜାଣ, ଶ୍ରୀବତ୍ସ ଏହା ଭାବଇ । ୫ ।

-*-

୨୭- ରଗିଣୀ ଗୁପ୍ତା ନାଟ — ତାଳ ଓକାଲି ।

ହେବା ଏକଜାତି ଆସହେ ଦ୍ୱିଜାତି
କ୍ଷତ୍ରୀ, ବୈଶ୍ୟ ଶୂଦ୍ର ସକଳ,
ଜାତିଶାଖା ଭେଦ ସବୁକର ରଦ୍ଦ
ଏକତାରେ ରଖ ନିର୍ଭର । ପଦ ।

କରିଣ ବାରଣ ମହତ୍ୱ ସାରଣ
ବସିଛ ଧରି ଏ ଶରୀର କେବଳ ।
ରକ୍ଷଣ ଶୀଳତା ଅଛି ନର୍ମତା
ଛାଡ଼ଦେ ଛାଡ଼ଦେ ସତ୍ୱର । ୧ ।

କରି ଅହଂକାର କହୁଛ ମାତର
'ବ୍ରହ୍ମ ଜାନାତି ବ୍ରାହ୍ମଣ' ନିରନ୍ତର,
କାହିଁ ସେ ବ୍ରହ୍ମତ୍ୱ, କାହିଁ ମନୁଷ୍ୟତ୍ୱ
ରଖିଛ ମୂର୍ଖତା କେବଳ । ୨ ।

କ୍ଷତ୍ରୀ ବୈଶ୍ୟ ଶୂଦ୍ରେ ଜାଣିଛନ୍ତି ହୃଦେ
ଅଛନ୍ତି ଜାଗ୍ରତ ବ୍ରହ୍ମ ଚର୍ଚ୍ଚାପର,
ବ୍ରହ୍ମେ କରି ସାକ୍ଷୀ ନପାରିବ ଠକି
ବ୍ରାହ୍ମଣ ହେଲେଣି ସକଳ । ୩ ।

ଛାଡ଼ ହେ ଅନ୍ଧତା, ଛାଡ଼ ହେ ଜଡ଼ତା
ଛାଡ଼ଦେ ବାରଣ ଜାତିର ଉପର,
ଗଲା ଅନ୍ଧ ଯୁଗ, ହେଲା କର୍ମଯୁଗ
ଜପ ହେ କର୍ମର ମନ୍ତ୍ର । ୪ ।

କର ନାହିଁ ଟାଣ, ଜାତି ବଡ଼ ସାନ,
ଏକଜାତି ଆମ୍ଭେ ସର୍ବେ ପଣକର
ପ୍ରଭୁ କୃପା ବଳେ ମିଳଣ ସକଳେ
ଉତ୍କଳ କରଣ ଉଦ୍ଧାର । ୫ ।

ଶ୍ରୀ ଜଗନ୍ନାଥ ପଣ୍ଡା

-*-

୨୭- ରାଗ କାମୋଦ-ଏକତାଳ ।

( ବାନ୍ଧବ କସ ଘାବ-ବୃତ୍ତରେ )

କଢ଼ାଇ ଦଅ ଘାଇ, ପିତଳ ଖଡ଼ୁ ବାନ୍ଧି,
ରମଣୀ ରନ୍ଧୁ ଭୁଲ୍ୟ ନୁହଇ ହେ । ପଦ ।

ତାର ଦାଢ଼ * କତ୍ରୁସ୍ତ ପଶ୍ଚାତରେ କର ଧାର
କାଖ ପିଲ୍ଲ ବଇଷ୍ଟ ହୁଅଇ ହେ ।
ତାର ତଳ * ସାପୁଆ କୋମଳ ମାଉଁଶିଆ
ହାତ ଯାକ ଧାଉଥା କରଇ ହେ । ୧ ।

ତହିଁ ଉପ୍ରରୁ * ମାଠ, ତା ତଳେ ନାହିଁ ବାଟ
ହାତକୁ ଭିଡ଼ି କଷ୍ଟ ଦିଅଇ ହେ ।
ମାଠ ତଳେ * ଚନ୍ଦ୍ରେଇ ଦେଖ୍ଲ ମାହେ ପିଂନ୍ଧେଇ
ଅବଳାକୁ ଲଜ୍ଜେଇ ଦଅଇ ହେ । ୨ ।
ସଭ୍ର ଶେଷରେ *ଦାନ୍ତ କଟିଟି ଦେଇ ମନ୍ଥି
ତହିଁରେ କେତେ ସ୍ତୁନ୍ତି କରଇ ହେ ।

ଘୋଡ଼ାଇ ମଣି ବନ୍ଧ ଦିଶଇ ଅପସନ୍ଦ,
ଦୂରରୁ କେତେ ଗନ୍ଧ କରଇ ହେ । ୩ ।

ଖଡ଼ୁ ଭିତରେ ମଳ ପାରିକ୍କ କଏ କଳ
ଉପରେ ସିନା ଝଳ ଦିଶଇ ହେ ।
କାଞ୍ଜି ପାଣି ତୋରଣି ହାଣ୍ଡିରୁ ଷତ ଗୁଣି
ଆଣିକରି ଘରଣୀ ଦଅଇ ହେ । ୪ ।

ପିତଳର କଳଙ୍କ, ହାତର ମଳ ଯାକ
ଲଗି ଅନ୍ଧ ମାରକ ହୁଅଇ ହେ ।
ନଦ୍ରାବେଳେ ଅଜ୍ଞାନେ ବାଜଲେ ମର୍ମ ସ୍ଥାନେ
କଅଁଳ ପିଲା ଝଟେ ମରଇ ହେ । ୫ ।

ସଗଇ ଯଦ୍ଧ ଯୋଷା ମାରଇ ବଡ଼ମୂଷା
ସ୍ମୃତିଷର କରପା ଭାଙ୍ଗଇ ହେ ।
ବିଶା ସଂଖ୍ୟାର ତୁଳ ବିଶେଷ ହୃଏ ମୂଲ
ଗରିବ ଲୋକ ଟଲ ହୁଅଇ ହେ । ୬ ।
ହେଲେହେଁ ବଡ଼ ଘର ଅଭ୍ୟାସୁଁ ନୁହେ ବାର
କିନ୍ତୁ ହାତଟି ସର ଯାଅଇ ହେ ।
ଘଟେଷ ଦଣ୍ଡୀ ଶ୍ରୀବତ୍ସ ପିନ୍ଧିଲେ ସବୁ କାଚ
ହାତଟି କେଡ଼େ ସ୍ୱଚ୍ଛ ଦିଶଇ ହେ । ୭ ।

---

* ଖଡ଼ୁବାହ୍ଲିର ନାମ ବିଶେଷ

-*-

-୨୮-

ମୁଲତାନ—ଆଡ଼ାଠେକ ।

ଉତ୍କଳ ରମଣୀ ରତ୍ନ ଦିଶଇ କି ଅସୁନ୍ଦର,
କଦର୍ଯ୍ୟ ବେଶ ଭୂଷାରେ
ତାର ଦେହ ଅଛି ଭରି । ପଦ ।

ଟଣ୍ଟୁସ୍ ଓଜନେ ଶାଢ଼ୀ
ତା' ଦେହରେ ଅଛି ଭିଡ଼ି,
ଦେହ ତାର ଦେଖ ନାହିଁ
ସେହି ପିନ୍ଧା ଶାଢ଼ୀ ପରି । ୧ ।

ପୁଣି ମହଣେ ଓଜନେ
ଖଡୁ ବଳା ଆଦ ପଣେ
ଗୋଡ଼ ଠାରୁ ବେକଯାଏ
ଦେଇଛି ଭରତି କରି । ୨ ।

ଯେବେ ରଗିବ ଅବଳା
କାଟିବ ସ୍ୱାମୀର ଗଳା
ଖଣ୍ଡା ବର୍ଛା ପରି ଯେତେ
ଗହଣା ସେ ଅଛି ଧରି । ୩ ।

ହୃଦେ ବହ୍ନି ଦସ୍ୟୁ ମତି
ଏ ସବୁ କଦର୍ଯ୍ୟ ରୀତି ।
ସଂସ୍କାର କରନ୍ତେ ଯାଇ,
ମହା ଧନ୍ୟବାଦେ ବରି । ୪ ।

ଶ୍ରୀ ଜଗନ୍ନାଥ ପଣ୍ଡା

-୨୯-

( କଦମ୍ବ ମୂଳେ କାଳିଆ- ବୃତ୍ତରେ )

ଆହା, ଓଡ଼ିଆ ଲଳନା କସୁନ୍ଦର ଦିଶଇ । ପଦ ।

ଲମ୍ବମାନ ନାକଚଣା, ଚନ୍ଦ୍ରାକାର ଫୁଲଗୁଣା
ନାସାପୃଷ୍ଠ କରି ଜଣା କ ରଙ୍ଗେ ନାଚୁଥାଇ । ୧ ।

ଦନ୍ତି ବନ୍ଧା ନାକ ସନ୍ଧ ନିଶ୍ୱାସକୁ ଦିଏ ରୁନ୍ଧି,
କାନରେ କାପ ବା ନୋଳି ଦିଏ ଶୋଭ ଚୁଣ୍ଡାଇ । ୨ ।

ଖୋସାର ମୁଣ୍ଡି ଚଉଁରି ଯୋଷାମନ ନିଏ ହରି,
ତାର ତଳ ଝବକାଠି ବେକ ତଳେ ଲେଟଇ । ୩ ।

ଓଡ଼ଣୀ କାଚ ଗୁଡ଼ାଏ ହସ୍ତରେ ଗୁଞ୍ଜି ଯେ ଥାଏ,
ହସ୍ତର ଖୋଳି କାଳିମା ବର୍ଣ୍ଣ ଶୋଭା ନାଶଇ । ୪ ।

ଅଧୂଳି ବସା ଅଙ୍ଗୁଷ୍ଠ ଅଙ୍ଗୁଳୀ ରଚେଖ ଓସାର,
ଖଡୁ ବାହୁ ଘରେ ଥାଏ କଟିଟି ବଣ୍ଡି ହୋଇ । ୫ ।

ଗୋଛ୍ଲ ୨ କାଚ ମାଳା ଗଳା ଦେଶେ କରେ ଖେଳା,
ଅବା ଗୁନ୍ଥା ସୁନା କଣ୍ଠି କଣ୍ଠ ଭଙ୍ଗି ରଖଇ । ୬ ।

ଝୁଲୁ ପଡେ ବକ୍ଷ ସ୍ଥାନ ରହି ସଦା ଅବାରଣ,
ମାନ ରକ୍ଷକ କଞ୍ଚୁକ କେବେ ପିନ୍ଧଇ ନାହିଁ । ୭ ।

ଦିଶୁ ପଡେ କଦାକାର ଅନାବୃତ ଅଙ୍ଗ ତାର,
ଚେଚ୍ଛା ମୋଟା ଲୁଗା ଛନ୍ଦେ ନଗ୍ନପ୍ରାୟ ରହଇ । ୮ ।

-*-

-୩୦-

ପ୍ରିୟ ଭାଇଙ୍କୁ କରୁ ଅଛୁଁ ଗୁହାରି । ପଦ ।

ମନେ ହେଜ ଭ୍ରାତୃଗଣ, ଭଗିନୀଙ୍କ ଅପମାନ
ରଖନାହିଁ ତାଙ୍କୁ ଭାଇ,
ବିଜ୍ଞାନ ବିଦ୍ୟା ଶିକ୍ଷାରୁ ନବାରି । ୧ ।

ନାରୀ ଜାତି ଅବନତ ହେତୁ ନପାଇବ ଖ୍ୟାତି,
ଉନ୍ନତିର ମୂଳ ଭିତ୍ତି
ଅବଶ୍ୟ ହୁଏ ଶିକ୍ଷିତା ନାରୀ । ୨ ।

ଗୃହିଣୀର କାର୍ଯ୍ୟ କ୍ଷେତ୍ର ନୁହେ ପାକଶାଳା ମାତ୍ର
କରିପାରେ ଆର୍ଯ୍ୟ ନାରୀ
ମହତ କାର୍ଯ୍ୟ ମନରେ ବିଚାରି । ୩ ।

ଏତ ହୀନ କନ୍ୟା ଗଣ ଭୋଗ ଦୁଃଖ ଅନୁକ୍ଷଣ,
ସହୁଛନ୍ତି କି ଦୂଷଣ,
ଝରହେ ସଦା ଲୋଇଣ ଧାର । ୪ ।

ପତ୍ନୀ ଭ୍ରଷ୍ଟା ହେଇ ଜଣ ହୁଏ ବାଲ୍ୟ ବୃଦ୍ଧ ଅବା,
ବାଳିକାକୁ ସଦା ରଟ ।
ବିଧବା ଝିଅ-ନୁହଇ କାହାରି । ୫ ।

-୦-

-୩୨-

( ଶୁଭେଉଡ ଏକ୍ସ ବାଗରେ-ବୃତ୍ତରେ )

ଆହା, ଉତ୍କଳ ଜନନୀ ଅଛୁ କେତେ ଦୁଃଖିନୀ । ପଦ ।

ତାର ଏଦଶା ଦେଖି ସହସା
ହୃଦୟ ହୁଅଇ ହାଣି । ୧ ।

ଆଜ ତା' ସୁତେ ଅଛନ୍ତି କେତେ
ମନେ ଘର ଅଭିମାନୀ । ୨ ।

କରନ୍ତି ମଜ୍ଜା— ଜନନୀ ପୂଜା
ସନ୍ନିଜନୀ ସଜ୍ଜ ଯେଜ । ୩ ।

କାନ୍ଥ ଦୁହିତା ହୋଇ ଘୃଣିତ
ରହନ୍ତି ଘରେ ବନ୍ଧନୀ । ୪ ।

ବିଦ୍ୟା ନଶିଖି ଧର୍ମ ଉପେକ୍ଷି
ଥାଆନ୍ତି ସଦା ମଉନୀ । ୫ ।

ଈଶାଣ କୋଣେ ରହି ବାରଣେ
ହୁଅନ୍ତି ମାତ୍ର ରନ୍ଧୁଣୀ । ୬ ।

ବେଶ ଭୂଷାରେ ପରିଧାନରେ
ହସୁଥାନ୍ତି କାଙ୍ଗାଳୁଣୀ । ୭ ।

ସୁତ ଦୁହିତା ନକଲେ ଚିନ୍ତା
ହେବକି ମାତା ସୁଖିନୀ ? । ୮ ।

-୦-

-୩୨-

( ପ୍ରାଣ ସଜନୀ, ଭଲ ଭୁଲିଲୁ ତା ପ୍ରୀତିରେ- ବୃତ୍ତରେ )

କାହିଁକି ଭାଇ, ଅଛ ଭୁଲି ବାଲ୍ୟ ବୟସେ । ପଦ ।

ଚଉଠି ଦିନ ବିଧାନ ଦେଖି କର ଅନୁମାନ

ଏ ରୀତି ନଥିଲା ପୂର୍ବରେ । ୧ ।

ମଧୁ ଶଯ୍ୟାର ବିଧାନ ଯୁବକ ବିବାହ ଚିହ୍ନ

ବିହିତ କରଇ ଲୋକରେ । ୨ ।

ଅବରତି ଲଜ୍ଜା ହୋମ ବିଟପ-ଦୋଷ ଲକ୍ଷଣ

ବୁଝାଏ ଯୌବନ ନାରୀରେ । ୩ ।

ଗୃହିଣୀ କର୍ମ ସାଧନ କରିବାକୁ ସେକି କ୍ଷମ

ଅକ୍ଷମ ଯେ ନିଜ ରକ୍ଷାରେ । ୪ ।

ବାର ବର୍ଷର ବାଳକ ବୁଝିବା କାହିଁ ବିବେକ

ପବିତ୍ର ବନ୍ଧନ ଚିତ୍ତରେ । ୫ ।

-୦-

— ୩୩ —

( ଦମ୍ଭ ତୋଷ୍ଟମସ୍ତ ଜଳରାଶିରେ- ବୃତ୍ତରେ )

ଅବଶ୍ୟ ଦୂର କର କାହିଁ ପାଇଁ ହେ ପ୍ରିୟ ଭାଇ,

ତ୍ୟାଗ କରି ଶାସ୍ତ୍ର ଧାରା ପାଳି ଅନ୍ଧ ପରମ୍ପରା,
ଅଜ୍ଞାନରେ ପାଇ ଜରା ଦେଉଅଛ ତୁମ୍ଭେ ପରା,
କୁଳ ରୀତି ଆଦର ଦୋହାଇ ହେ । ୧ ।

କଳିଯୁଗେ ଚରିଶର ସ୍ମୃତି ଅଟେ ସର୍ବସାର,
ନବୁଝିଣ ସାରସାର କରୁଅଛ ଅନାଚର,
ପୂର୍ବ ଘଟିତ ଆଉ କରୁ ନାହିଁ ହେ । ୨ ।

ବସ୍ତୁର ନାହିଁ ଭୁମତା, ମହତ୍ତ୍ୱ ଯାଉଛୁ ସରି,
ବିଦ୍ୟା ଶିକ୍ଷା ପରହରି ଢଙ୍ଗ ଛନ୍ତି ଅଛି ପରି,
ଜନ୍ମ ଯାଅ ନରକର ହୋଇବେ । ୩ ।

ନଆର ଶୋଧା ବିଧାନ ଅଟଇ ଘଟି ସବନ,
ପୂର୍ବକାଳେ ଋଷୀଗଣ କରୁଥାନ୍ତି ବିବରଣ,
ନିଃଶଙ୍କରେ ପରିଦା ନଥାଇ । ୪ ।

ବଧୁ ହୋଇ ବାଲ୍ୟବନେ ବିଧବା ହୋଇ ଯୌବନେ,
ନଭାବ କେହି ଜଣେ, ଭଗ୍ନୀ ରହେ ଆଜୀବନେ
ଦୁଃଖ ସହି, ଶ୍ରୀବତ୍ସ ଭାବଇ । ୬ ।

-*-

## -୩୪-

ନବ ସଂସ୍କାର ହୋଇବ ରୂଢ଼,
ଦେଶ କାଳ ପାତ୍ର ଅନୁସାରେ
ଶାସ୍ତ୍ର ମତଟି ପ୍ରବଳ ରହିବ ହେ । ପଦ ।

ଦାରୁଣ ଯାତନା ସହି କ ଚେତନା
କାହାରିକ କେବେ ନୋହିବ,
ଚିତାନଳ ଶବ ଦହନ କରଇ,
ଚିନ୍ତାନଳ ସର୍ବ ଦହିବ ହେ । ୧ ।

ରମଣୀ ଜାତିଟି ନର୍କ ୀବ ରହୁଛି,
ସମାଜ ହିତ କ ହୋଇବ,
ମାତାର ଉନ୍ନତ ନକଲେ କ ଜାତ-
ଅବନତ ଘୁଞ୍ଚ ନୋହିବ ହେ । ୨ ।

ସରଳା ଅବଳା ହୋଇଲେ ଦୁର୍ବଳା,
ତୁମ୍ଭେ କ ପ୍ରଶଂସା ପାଇବ,
ମର କଳେବର ମିଳିବ ଧୂଳିର,
କୀର୍ତ୍ତି ଚିରନ୍ତନ ରହିବ ହେ । ୩ ।

ବାକ୍ୟବୀର ନୋହି କର୍ମବୀର
ହେଲେ କ କାର୍ଯ୍ୟ ଅସାଧ୍ୟ ରହିବ,
ଅଜ୍ଞାନ ଶୃଙ୍ଖଳ କବା ଚିରକାଳ,
ପଦ ଯୁଗେ ବାନ୍ଧି ଶୋଭିବ ହେ । ୪ ।

ଶ୍ରୀ ବାଞ୍ଛାନିଧି କବିଭୂଷଣ ।

-❋-

-୭୪-

( ସହି ହେଲ ଆଜ ଭଜନୀ ବଢିବ କେହିରେ- ବୃତ୍ତେ )

ଦେଖ ଆହେ ଭ୍ରାତୃମଣ୍ଡଳ, ଭଗିନୀଙ୍କ ଯାତନା,
ପୁଷ୍ଟ ପର ପିତା ମାତା କରନ୍ତ ନାହିଁ ଲଳନା । ୧ ।

ଶାସ୍ତ୍ର ଶିକ୍ଷା ସ୍ୱତ୍ୱ ବହୁର ଅଙ୍ଗନାଙ୍କୁ ଦେଖନ୍ତୁ,
ବୃଥା କଥାରେ ସେମାନେ କରନ୍ତି ଦିନ ଯାପନା । ୨ ।

ବାଲ୍ୟ ବେଳୁଁ ବଶ୍ୟ ଦେବାର ଅଛଇଟି ଧାରଣା,
ପାଇ ନିଜ ସୁଖ ଦୁଃଖ କହିବ ନାହିଁ ଶୋଚନା । ୩ ।

ହେଲେ ପୁଣି ହେନ୍ତି ତରୁଣୀ କାଳେ ସ୍ୱାମୀ ବଶ୍ୟା,
ଆଜୀବନ କାଟେ ଦିନ ସହି ବିରହ ବେଦନା । ୪ ।

କଲେ ଦୂର ଏହି ଆଗ୍ରହ, କର ନାହିଁ ଭାବନା,
ବୋଲେ ଦ୍ୱିଜ ଲିଙ୍ଗରାଜ ହେବ କୁତ୍ସିତ ମାର୍ଜ୍ଜନା । ୫ ।

-*-

-୩୬-

( ଏଯୁବା କାଳେ ଏହା ଲେଖିଥିଲି- ବୃଦ୍ଧେ )

ଏହି ଉତ୍କଳେ ଏହା ଥିଲା କୁଳାଙ୍ଗନା ଭାଲରେ । ପଦ ।

ହୋଇ ବିଦ୍ୟାହୀନା  ବିଜ୍ଞାନ ବିହୀନା
ଦିନ ସାରେ ବୃଥା ଚିନ୍ତାରେ,
ସ୍ୱତ୍ୱ ଶାସ୍ତ୍ର ଶିକ୍ଷା  କରଣ ଉପେକ୍ଷା
କାଳ କାଟେ ରନ୍ଧା ଶାଳାରେ । ୧ ।

ବାଲ୍ୟେ ବିବାହିତା  ଅବୋ ଦୁଏ ଶୀତା
ଧନ ଲୋଭେ ବୃଦ୍ଧ କୋଳରେ ।
ଗୃହେ ଅବରୁଦ୍ଧା  ରହୁଥାଇ ସଦା
ଆଜୀବନ ପରାଧୀନରେ । ୨ ।

ଅନ୍ଧ ପରମେଶ୍ୱର ଚାଳନେ କୁଶଳୀ
ବୃଦ୍ଧ କରେ ସୁଖ ଇଚ୍ଛାରେ ।
ସ୍ୱାମୀଙ୍କ ସଙ୍ଗରେ ମଙ୍ଗଳ କାର୍ଯ୍ୟରେ
ନୁହେ କ୍ଷମ ଯୋଗ ଦାନରେ । ୩ ।

କାଳେ ଚକ୍ଷୁ ହୀନା ହେଲେ ସେ ଯନ୍ତ୍ରଣା
ଭୋଗେ ସଦା ଦ୍ୱିଜ ଜାତିରେ ।
ଅଥବା କାମିନୀ, କୁପଥ ଗାମିନୀ
କାଳି ଦିଏ ଘୂତ କୁଳରେ । ୪ ।

ରମଣୀ ବିଧବା କରିଥିଲେ ଅବା
କେଉଁ ପାପ ପୂର୍ବ କାଳରେ ।
ଭୋଗିବାକୁ ଏବେ ଯାତନା ମରବେ
ବିନା ଦୋଷ ଅପରାଧରେ । ୫ ।

ଜାଣ ଅବନତ ସାଥି କେଉଁ ଜାତି
କାହିଁ ଲଭେ କେଉଁ କାଳରେ ?
ସ୍ତ୍ରୀ ଜାତି ଉନ୍ନତ ବିନା ନାହିଁ ଗତି
ରଖିବାକୁ ଖ୍ୟାତି ଦେଶରେ । ୬ ।

-୦-

-୩୭-

( ଭଜବରଜ ରାଜରେ ଗାମର ମନ- ବୃତ୍ତରେ )

ମନେ ବିଚାର କରହେ ଉତ୍କଳୀ ଭାଇ,
ପୂର୍ବେ ଥିଲକି ଏ ଗତି,

ପୂର୍ବେରେ ନାରୀ ଜାତି ପ୍ରକାଶ୍ୟେ ବିହରନ୍ତି,
ନଥିଲ ଘୋଷା ପ୍ରଥା ଥାଏକ ଏଣ୍ଡି ସ୍ଥିତି ?
ଆଜ ସେ ସ୍ୱାଧୀନ ନି ହତ ଭାଗିନୀ,
ଲୁଚାଇ ସଙ୍ଗିନୀ ଦିବସ ଯାମିନୀ,
ସ୍ୱାମୀ ସଙ୍ଗ ପୁଣି ବଞ୍ଚିତା କାମିନୀ,
ଗୃହରେ ରହନ୍ତି ହୋଇଣ ବନ୍ଦିନୀ । ୧ ।

ଦେଖ ଭୂମଣ୍ଡ ପ୍ରତିବାସୀ, ପୁରୁଷ ସଙ୍ଗେ
ନାରୀ ସାଧନ୍ତି ଉନ୍ନତି ।
ପୂର୍ବେ ଆର୍ଯ୍ୟ ବନିତା ହେଉଥିଲେ ଶିକ୍ଷିତା,
କରୁଥାନ୍ତି ସର୍ବଦା ଶ୍ରୁତି ଶାସ୍ତ୍ରାନୁଚିନ୍ତା ।
ଦେଖନ୍ତୁ ସମ୍ପ୍ରତି କୁଳୀନା ଯୁବତୀ
ନିରକ୍ଷର ହୋଇ ଜୀବନ କାଟନ୍ତି,
ଅସାର ଚିନ୍ତାରେ ସମସ୍ତ ସାରନ୍ତି
କଳିରେ କଅବା ମତିକି ବଳାନ୍ତି । ୨ ।

ଲୋଭ ପରବଶ ହୋଇ ନକର ଆଉ
ଏହି ଜଘନ୍ୟ କୁମତି ।
ପୂର୍ବ କାଳେ ଯୁବତୀ କନ୍ୟା ଦତ୍ତ ହୁଅନ୍ତି,
ନତୁବା ସେ ବରନ୍ତି ନିଜେ ନିଜର ପତି ।
ଆଜିର ବାଳିକା ବିବାହ ହୁଅନ୍ତି,
ନଜାଣି କାହିଁକି ପ୍ରଣୟ ପଦ୍ଧତି,

ଅଥବା ବର୍ଦ୍ଧିତା ବୃଦ୍ଧକୁ ହୁଅନ୍ତି,
ବରଟେ କାତର ରହନ୍ତି ଯୁବତି । ୩ ।

ଯୁକ୍ତି ବିଧାନ ବସ୍ତୁରେ ଧର୍ମର ସ୍ଥାନ
ହୁଏ ନାହିଁ କଦେ ଜାଣି ।
ପୁଣି ପରାଶରାଦ୍ଧ ସ୍ମୃତିରେ ଲେଖିଛନ୍ତି
ବଣକେ ଅନ୍ୟ ଛନ୍ଦ ସ୍ୱାମୀ ହୀନା ଯୁବତି ।
ତଥାପି ବିଧବା ହେଉ କଳଙ୍କିନୀ,
ବିବାହ ତାହାକୁ ଦେବାକୁଟି ପୁଣି
କରନ୍ତି ଆପତ୍ତି ସବୁ ଜାଣି ଶୁଣି
'ସମାଜମିତ୍ର' ଚଣ୍ଡିତ ଚୂଡ଼ାମଣି । ୪ ।

-*-

-୩୮-

( ମନେ ପଡ଼ୁଛି ଯେ ସେହି ଚନ୍ଦ୍ରମୁଖ- ବୃତ୍ତେ )

ଭଗ୍ନୀ ଭୋଗୁଛି ଯେ ଦୁଃଖ ଅପମାନ,
ମନେ ଚିନ୍ତା କଲେ ହୁଏ ହୃଦୟ ବିଦୀର୍ଣ୍ଣ । ପଦ ।

ବିଦ୍ୟା ଶିକ୍ଷାରୁ ବଞ୍ଚିତା ରହଇ କୁଳ ବନିତା
ମୂର୍ଖା ମୁଗ୍ଧା ବୋଲି ସଦା ପାଇଣ ଲାଞ୍ଛନ । ୧ ।

ଅଥବା କଲେ ରମଣୀ ଲେଖା ପଢ଼ା ଶୁଣାଶୁଣି,
ନିର୍ଲଜ୍ଜା ମୁଖରା ବୋଲି ପାଉଛୁ ଦୂଷଣ । ୨ ।

ଯାହା ପବ ଉତ୍ସବରେ ଆବଦ୍ଧ ଗୃହ କୋଣରେ
ରହୁ ଥାଇ ନିବାରଣ କାରାରେ ଯେସନ । ୩ ।

ନବ୍ୟ ସମାଜରେ ଭୂଷଣ ସଭ୍ୟତାର ପରଧାନ
କୁଳୀନା ଲଳନା ପକ୍ଷେ ହୁଏ ଅଭୂଷଣ । ୪ ।

ବାଲ୍ୟ ଧନେ ବିଭା ହୁଏ ବୃଦ୍ଧକୁ ବା ଦିଅ ହୁଏ
ଦୁଃଖମୟ କର ସଦା ପ୍ରଣୟ ବନ୍ଧନ । ୫ ।

କାଳେ ହେଲେ ସ୍ୱାମୀ ହୀନା ଭୋଗୁଛୁ କେତେ ଯନ୍ତ୍ରଣା
ମରବେ ସହୁ ବିରହ ବାଧା ଆଜୀବନ । ୬ ।

ଶୁଭ କାର୍ଯ୍ୟେ ନିରନ୍ତର ସଧବା ସଙ୍ଗ ଅନ୍ତର
ହୋଇ ସହେ କ୍ଷୁବ୍ଧ ମନେ ଘୋର ଅପମାନ । ୭ ।

-*-

-୩୯-

( କାହିଁ ଅଛ ଶ୍ରୀହର- ବୃତ୍ତି )

ଦେଖ ତୁମ୍ଭ ଭଗିନୀ କ ଅଭାଗିନୀ ! ହେଉଛ ଉଦାସୀନ,
କାହିଁ ପାଇଁ ହୋଇଛ ତୁନ । ପଦ ।

ବୃଦ୍ଧ ଗୃହରେ, ପାକ ଶାଳାରେ,
ବାର ମାଳରେ, ନଗ୍ନ ଚଟରେ,
ଅବା ପଡ଼ୋଶୀ ସଙ୍ଗରେ, ଅସାର ଚିନ୍ତାରେ
କିବା କଳି କାର୍ଯ୍ୟରେ କାଟଇ ଦିନ ଯାମିନୀ । ୧ ।

ବିଦ୍ୟା ଶିକ୍ଷା ଲଭୁଁ ବଞ୍ଚିତା,
କୁସଂସ୍କାର କର୍ମେ ନିରତା
ହୋଇ ଅଛୁ କି ଦୁଃଖିନୀ । ୨ ।

ରହେ କର୍ମ ଅନୁସରି,
କାର୍ଯ୍ୟେ ସଦା ଦାସୀପରି
ନାମେ ମାତ୍ର ସଙ୍ଗିନୀ । ୩ ।

ବେଶ ଭୂଷା ଅତି କଦାକାର
ହେତୁ ପାଉ ଥାଏ ଅନାଦର
ଶୈଶବେ ବିକ୍ରୀତା ହୋଇଣ ବୃଦ୍ଧଙ୍କୁ
ଆଜୀବନ ରହେ ବିଧବା ତାପିନୀ । ୪ ।

-*-

—୪୦—

ଆହେ ଦ୍ୱିଜାତି ସୁତେ, ଏପରି ନିର୍ଦ୍ଦୟ
ହୋଇ ଅଛି ତୁମ୍ଭର ହୃଦୟ,
ତେଜ ସର୍ବ ମାୟା କରୁଅଛ ପଶୁ ପ୍ରାୟ
ସ୍ୱକୀୟ ଦୁହିତା ରକ୍ତ ଚୟ । ପଦ ।

ନିଜ ରକ୍ତରୁ ଜାତ ଅଟନ୍ତି ଯେ ସୁତାସୁତ
ତାହାଙ୍କୁ କରୁଛ ହେ ବିକ୍ରୟ ।
ଏହାଠାରୁ ବଳି ଆଉ କେହ୍ନି ଭବେ ପାପ ନାହିଁ
କରନା ଆତ୍ମାକୁ ପାପମୟ । ୧ ।

ସାମାନ୍ୟ ଅର୍ଥର ଲୋଭେ ବିକଉଛ କନ୍ୟାକୁ ଦନ୍ତେ
କରଣ ଜନମ ମହାଶୟ
( ଲୋଳିତ ଚର୍ମ ଯେ ବର ସେ କି ଯୋଗ୍ୟ ବାଳିକାର ?
କରିବାକୁ ଶୁଭ ପରିଣୟ )
ହୋଇ ତୁମ୍ଭେ ଅର୍ଥ ବ୍ୟାଧ ହୋଇ ପୁଣି ଅତି ଅନ୍ଧ
କରୁଛ ବିଧବା ଦେଶମୟ । ୨ ।

ଟାଣରେ କହ କିଣ "ଆମ୍ଭେ ଅଟୁ ଉଚ୍ଚ ଜାତି"
ତେବେହେଁ ହେଉଛୁ ନୀଚାଶୟ ।
ପିଶାଚ ପ୍ରାୟେ ହୋଇ ହୀନ କାର୍ଯ୍ୟ କରନାହିଁ
ହୋଇ ତୁମ୍ଭେ ଅତି ନିରଦୟ । ୩ ।

ଶ୍ରୀ ଜଗନ୍ନାଥ ପଣ୍ଡା ।

-୦-

—୪୧—

କାହିଁ ପାଇଁ ଭାଇ, କର ନ ପଢ଼ାଅ ଜାୟାଙ୍କ । ପଦ ।

ବିଦ୍ୟାର ବିନୟ ଦିଏ ଏହି ମତ ଶାସ୍ତ୍ର କହେ
ଶୁଣା ନାହିଁକି ତାହା କହ ଶ୍ରୁତିକ । ୧ ।

ଶିକ୍ଷଣୀୟା ପାଳନୀୟା ତନୟ ପରି ତନୟା
ପଢ଼ି ନାହିଁକଏ ସ୍ୱଭାବଜଙ୍କ । ୨ ।

ଯାହିଁରେ ନିଷେଧ ଥିଲେ କହତା ଶୁଣିବା ଭଲେ
ଅଦର୍ଶନ ବସ ଖୋଜ ଶ୍ରୁତିକ । ୩ ।

ଗାର୍ଗୀ ମୈତ୍ରେୟୀ ସାବିତ୍ରୀ ଥିଲେ ବେଦ ରଚୟିତ୍ରୀ
ଭଲେ ଚିହ୍ନ ଅଟେ ସରସ୍ୱତୀଙ୍କ । ୪ ।

ଭାସ୍କର ଆଗୃର୍ଯ୍ୟ ପାଟୀ ଗଣିତରେ ପରିପାଟୀ
କରି କଳ୍ପିଛନ୍ତି ଲୀଳାବତୀଙ୍କ । ୫ ।

ପଦ୍ମଚରଣ କବିଚନ୍ଦ୍ର ।

-୦-

-୪୨-

ଚିରନ୍ତନ ଅଶିକ୍ଷିତା ଉତ୍କଳ ରମଣୀ ଗଣ,

ଥିବେ କହେ ଗୃହ କୋଣେ ମୁଦ୍ରିତ କରି ଲୋଚନ । ପଦ

ଶିକ୍ଷା ଦେଇ ରମଣୀଙ୍କୁ ବାହାର କଲ ପରଦାରୁ
ସ୍ୱାଧୀନତା ଦାନେ କୃତ— କୃତ୍ୟ କଲ ହୁଅ ଧନ୍ୟ । ୧ ।
ସୀତା, ଦ୍ରୌପଦୀ, ସାବିତ୍ରୀ, ଦୁର୍ଗାବତୀ, ଲୀଳାବତୀ
ଜାଣିଛ ସ୍ୱାଧୀନା ଥିଲେ ରମଣୀ କୁଳ କଲ୍ପମ । ୨ ।
ସେ ପୁରାଣ ଇତିହାସ ପଢ଼ି ଯା' ସ୍ଥାନ ସାହସ
ହୋଇଛ, ଅଟ ଆଶ୍ଚର୍ଯ୍ୟ ମଣୁଛୁ ସଂସ୍କୃତ ମନ । ୩ ।
ସଙ୍କୀର୍ଣ୍ଣତା ପରିହରି ଉଦାରତା ହୃଦେ ଧରି
କର ଭୂଭାରତେ ଧନ୍ୟ ଉତ୍କଳ ଦେଶର ନାମ । ୪ ।

ଶ୍ରୀ ଜଗନ୍ନାଥ ପଣ୍ଡା

-*-

-୪୩-

( ଜଣା ଥିଲନ୍ତି ମତେ ଏ ଗୀତ ଗୋ-ବୃତ୍ତେ )

ଶୁଣ ଥିଲକ ମୁଣ୍ଡ ଏ ଗୀତ ହେ,
ବଣା ନୂହ ଘଇ, ଜଣା ପରି ହୋଇ
ତେଜ ନିଜ ଆର୍ଯ୍ୟ ମାତ ହେ । ପଦ ।
ନାହିଁ ଜାତି ସ୍ୱାଧୀନତା କ୍ଷମତା
ହରି ନେବା ଶକ୍ତ ନୁହେ ସୁପ୍ରଥା,

ଡରି ତାଙ୍କୁ ଯିବା କଣ୍ଟବାର ମନା
ଅଛଇ ଯବନ ସ୍ଥିତ ହେ । ୧ ।

ବାସିକାମ କରି ଦିବା ଯାମିନୀ
ଦାସୀ ହୋଇ ରହେ ସହଧର୍ମିଣୀ,
ଦେଖିବା ଲେଖିବା ପଢ଼ିବା ଶୁଣିବା
ମନା ଥାଏ ତାହା ପ୍ରତି ହେ । ୨ ।

ରନ୍ଧାଶାଳା ଅଛି କୂପେ ପଡ଼ିଣ
ଝୁରିଥାନ୍ତି କାରା ଗୃହେ ଯେସନ,
କାଳେକେ ପଳାନ୍ତି ଭଲସେ ଲୁଚନ୍ତି
ଦେଖିଲେ ପୁରୁଷ ଜାତି ହେ । ୩ ।

ପୂର୍ବେ ସୀତା ଦମୟନ୍ତୀ ପ୍ରଭୃତି
ସର୍ବେ ପରକାଶ ଥିବେ ବୁଲନ୍ତି
ଦେଶ ବିଦେଶରେ, ବାସ ଭବନରେ
ସଙ୍ଗେ ଘେନି ନିଜ ପତି । ୪ ।

ଆଜି ସେହି ଆର୍ଯ୍ୟ ଉତ୍କଳୀ ନାରୀ
ଲଜ୍ଜା ହୁଏ ରହିବାକୁ କିପରି
ଚୂଡ଼ାନ୍ତର ପରି ଚୁଁ ଚୁଁ ଠାର କରି
ଛୁଡ଼ି ଗୃହ କୋଣେ ନିତି ହେ । ୫ ।

-⁂-

-୪୪-

( ଦ୍ୱଇସ୍ୱଣ କାହିଁକ ଏତେଭ—ବୃତ୍ତେ )

ସୁଶିକ୍ଷିତ ଭାଇ, କାହିଁକି
ଶିକ୍ଷା ଦେଉନାହଁ ତୁମ୍ଭ ଭଗିମାଙ୍କ । ପଦ ।

ସ୍ନାନ ଘାଟେ ସେ ପଡ଼ନ୍ତି ଜଲଙ୍ଗ ବଶେ,
ଘରେ କାନ୍ଥ ଛନ୍ଦେ ବାନ୍ଧେ କଟିକ ।
ସ୍ୱାମୀ ସଙ୍ଗାଳାପ ଥାଉ ତେଣିକ,
ଢବସେ ନଆସେ ତାଙ୍କ କଣ୍ଠକ । ୧ ।

ରନ୍ଧାଶାଳା ଅନ୍ଧକୂପେ ସଦା ପଡ଼ି
ଦବା ଭଟେଗ ଯାଏ ନାହିଁ କେଣିକ ।
ନଣନ୍ଦ ଅମିଣ ସ୍ୱାମୀଙ୍କ ସ୍ୱାଧୀଣ
କଗ୍ୱଇ ଭେଟାଏ ଅଧ ଗ୍ୱତ୍ତକ । ୨ ।

ସଙ୍ଗୀତ ସାହିତ୍ୟ ଶିକ୍ଷା କରି ଦୂର
ଚୂ ଚୂ ରଟେ ଯେଉଁ ନନ୍ଦେ ମୂଷିକ,
ସେ ପୁଣି କପଟ ସରସ ଆଳାପେ
ତୋଷିବ ମୋହିବ ତୁମ୍ଭ ମସ୍ତକ । ୩ ।

ଅଭିନବ ସଂସ୍କାରକ ଭାଇ କେତେ
ବାରଣ କଲେହେଁ ବାର ନାଗ୍ୱକ,

ସଙ୍ଗୀତ ଶିକ୍ଷିତା ହେବନା ଅଭାବେ
ବେଶ୍ୟା ଦେବଦାସ ଦୂର ହେବକ । ୪ ।

ମରମ ନଜାଣି ଭରମ ହେଉଛ,
ବଗୁର ମକର ଥରେ କାହିଁକ ।

ମୂଳକୁ ପାଳଣ ଡାଳକୁ ଛେଦୁଛ,
ବୁଦ୍ଧି ଟି ତୁମର ବାମ ହେଲକ । ୫ ।

-୦-

-୪୫-

ଆହାକ ହତ ଭଗିନୀ । ପଦ ।

ଉତ୍କଳ କୁଳ ସୀମନ୍ତିନୀ
କ କଷ୍ଟେ କାଟନ୍ତି ଦିବା ଯାମିନୀ
ସଦ୍ବାସିନୀ, ସୁଖଦାୟିନୀ,
ମନ ମୋହିନୀ, ମୃଦୁ ଭାଷିଣୀ । ୧ ।

ଯେଥିଲ ସହଧର୍ମିଣୀ
ଆଦରଣ ଆର୍ଯ୍ୟ ଗୃହିଣୀ,
ସତୀ ନାରୀ ମାନଙ୍କ ଶିରୋମଣୀ,
ସେହି କାମିନୀ ଆଜ ଦୁଃଖିନୀ, ଅବମାନନୀ,
ଲୁହେ ହଙ୍ଗିନୀ । ୨ ।

ଶିକ୍ଷିତା ଆର୍ଯ୍ୟଜନତା,
ବିପଦେ ପରାମର୍ଶ ଦାତା,
ସଙ୍ଗୀ କରନ୍ତି ହିତ ଚିନ୍ତା,
କିନ୍ତୁ ସମ୍ପ୍ରତି ହିନ୍ଦୁ ଯୁବତୀ ଅତି ଅଜ୍ଞାନୀ,
ସଦା ମଳିନୀ ।୩।

-୦-

-୪୭-

ଜଗତାତା କର ଶାନ୍ତିହେ, ପତିହୀନା ଭଗିନୀ ଗଣେ ।
ଯାଙ୍କ ବୟସେ ବଡ଼ ହୋଇ
ବିଧବା ରହନ୍ତି ଆଜୀବନେ ।ପଦ।

ଯଉବନେ ଦୁଃଖିନୀ ରହୁଛନ୍ତି ବରଷରେ ବିଧୂର, ଅସ୍ଥିର,
ଯାବତା, ଚିନ୍ତିତା ଅଭାବେ ଘଡ଼ଦିନେ ।୧।

ତାଙ୍କ ପ୍ରବେଶ ମନା ଉତ୍ସବାଦି ପର୍ବଦିନେ,
ଅଶୁଭ, ଅଭାଗୀ, ଦୂଷିତା, ଲାଞ୍ଛିତା,
ଘୃଣିତା ସବୁଦିନେ ।୨।

ନିର୍ଜ୍ଜଳା ଏକାଦଶୀ କୋମଳା ବାଳିକା ପାଳେ,
ଛାଡ଼ି ସେ ଆମିଷ, କରଇ ହବିଷ୍ୟ,
ବିଶେଷ କ୍ଷୁବ୍ଧ ମନେ ।୩।

ସଧବା ବେଶ ଦେଖି ଚିନ୍ତିତା ହୋଇ କାତରେ
ଅପ୍ରିୟା, ବର୍ଜ୍ଜିତା ବନିତା ସ୍ୱରୂପା
କାନ୍ଦଇ ଦ୍ୱାରକୋଣେ । ୪ ।

ନ କଲେ ପ୍ରଭୁ ରକ୍ଷା, ଅନ୍ୟ କେ କ୍ଷମ ନାହିଁ
କୁତ୍ସିତ ଦଳିତ ସମାଜୁ ବାଳିକା
ବିଧବା ପରିତ୍ରାଣେ । ୫ ।

-*-

-୪୭-

( ପରିଣମିତ ପତ୍ନୀର ଲୋ ତାଙ୍କୁ ସନ୍ଦେଶ-ବୃତ୍ତେ )

ଓଡ଼ିଆ ଭାଇ, ଗୁଡ଼ ଏହି ଯବନ ଗୀତ । ଘୋଷା ।

ଅବଳାଙ୍କୁ ବଳେ ରଖିବାର,
ନିରୁଦ୍ଧ କରି ଗୃହ ଭିତର,
କେହି ନ ଜାଣେ ଛଣାଣ କୋଣେ
ଲୁଚାଇ ତାଙ୍କୁ ରଖିବାର । ୧ ।

ଯାହା ପର୍ବ ଉତ୍ସବ ପୁରୁଷେ
ବାହାରେ ବୁଲନ୍ତି ମନ ଉଲ୍ଲାସେ,

କାନ୍ଥ ବାଦ୍ୟର ଶବଦ ଶୁଣି
ଝରକରେ ଆସିଣ ତରୁଣୀ
ଗବାକ୍ଷ ପାଖେ କଟାକ୍ଷେ ଦେଖେ,
ଆଖି ନଚାଇ ତା ରହେ ଦ୍ୱାରରେ । ୨ ।

ଶ୍ରାଦ୍ଧ ବ୍ରତ ଶୁଭାଶୁଭ ଦିନରେ
ନାରୀଗଣ ଆସିଥାନ୍ତି ଗୃହ ବାହାରେ,
କେତେ ଅବଗୁଣ୍ଠନେ ଆବୃତ
ଦେହବାରୁ କଟିଦେଶ ପର୍ଯ୍ୟନ୍ତ
ନଇଁପଡି ପଥ ଚାଲୁଥାନ୍ତି
ଅନ୍ତରେ ଆଶ୍ରା କର ଅନ୍ୟର କାନ୍ଥ । ୩ ।

—*—

—୪୮—

ରସିକ ପଣକୁ ଧିକ, ଛି ଛି ଏତେ ନିର୍ଲଜ,
କୁଳୀନାକୁ ଘୃଣା, କର ବଳପୂର୍ବକ ଯାନ ଭଜ । ପଦ ।

ବୁଦ୍ଧି ନଷ୍ଟେ ଶଠଙ୍କୁ ତୋଷୁ ଥାଅ ପରକୁ,
ପାପ ପୂରିତ ଜଗତରେ ସଭାକୁ ଦୁଃଖ ସଜ । ୧ ।
ଝିଅଙ୍କୁ ନଦେଇ ଶିକ୍ଷା କରୁଥାଅ ମୁଷ୍ଟି ଭିକ୍ଷା,
ଶିଶୁ ପୁତ୍ର ବିବାହାର୍ଥେ ଶତ ମୁଦ୍ରା କରଜ । ୨ ।

ତୁ ଏମନ୍ତି ହସ୍ତାନ୍ତର କରି ବେଶ ଭୂଷା କର,
ସ୍ୱର୍ଣ୍ଣ ରୌପ୍ୟ ଅଳଙ୍କାର ନାରୀଙ୍କର ସଜ । ୩ ।
ମସ୍ତକରେ କର ପୀଡ଼ା ସହି ନପାରୁଛ ବ୍ରୀଡ଼ା
କର ଇନ୍ଦ୍ରଜାଲ କ୍ରୀଡ଼ା, ନ ହୁଏ କ ଦରଜ । ୪ ।

ଶ୍ରୀ ବାଞ୍ଛାନିଧି କବିଭୂଷଣ

-※-

-୪୯-

( ଶରଣ ରକ୍ଷଣ କଳୁଷ ହରଣ-ବୃତ୍ତରେ )

ଜଗତ କାରଣ, ତ୍ରିଲୋକ ମୋହନ,
ଅନନ୍ତ ଅନାଦି ନାମ
ଦୟାମୟ ନ୍ୟାୟବାନ
ପରମେଶ୍ୱର ଭଗବାନ । ୦ ।
ବିଧବା ଭଗିନୀ ଅଭ ଅଭାଗିନୀ
ସହନ୍ତେ ସଦା ଅପମାନ ।
ଭୋଗେ ଦୁଃଖ ଆଜୀବନ,
ବିରହେ ଅସ୍ଥିର ପ୍ରାଣ । ୧ ।
ବିଧବା କାମିନୀ ବିପଥ ଗାମିନୀ
ହୁଏ କୁଳ କଳଂକିନୀ,
ମାନସିକ ଶାନ୍ତିବାଣ
କରି ନ ପାରି ନିର୍ବାଣ । ୨ ।

ଜାଣେନାହିଁ ବନ୍ଧୁ ବାଳକା ବିଧବା,
ଯାର ନାହିଁ ଆତ୍ମଜ୍ଞାନ,
କର ତାକୁ ପରିତ୍ରାଣ ହେଉ, ସେହି ବନ୍ଧୁ ପୁଣ । ୩ ।

-*-

-୪୦-

ଈଶ୍ୱର କଲେ ପାଇବ
ନରତେ ନାମ ଗାଇବ ।
ବାଲ୍ୟ କାଳରୁ ବିବାହ-ଗାହବାହ
ସେସବୁ ବନ୍ଧ ତ ହୋଇବ । ପଦ ।
ଅନାଥା ବିଧବା ହୋଇଣ ସଧବା
ମେଣୀ ସତେ ବୋଲାଇବ ।
ଗୃହସ୍ଥା ଶରମ ମହତ କରମ
ପୁରୁଷ ସଙ୍ଗେ ଆଚରିବ । ୧ ।
ସିନ୍ଦୂର ଅଇଁଳା ଦେଇ ହତଭାଗା
ପମ୍ପାର ନରେ ଗାଧୋଇବ,
ଯେବେ କେହି ଜନ ଏବୃତ୍ତ ବଚନ
କହିବ ତା ପାଦେ ନମିବ । ୨ ।
ଦାରୁଣ ମରଣ ବେଦନା ତରୁଣ
ବପୁସେ ସିନା ଛଡ଼ାଇବ । ୩ ।

-*-

— ସ ମା ପ୍ତ —

* ଶ୍ରୀ ବାବାଜି ନାୟକଙ୍କ ଦ୍ୱାରା ଶ୍ରୀ ପ୍ରେସ୍, ଭଦ୍ରକରେ ମୁଦ୍ରିତ ।

# ଶ୍ରୀବତ୍ସ ପଣ୍ଡାଙ୍କ ପ୍ରକାଶିତ ପୁସ୍ତକାବଳୀ—

୧- ସଂସ୍କାର ୧ମ ରୁ ୩ୟ ଖଣ୍ଡ ପର୍ଯ୍ୟନ୍ତ
୨- ବୈଦିକ ଧର୍ମ
୩- ରାମାୟଣ ଓ ମହାଭାରତ ସାର ସଂଗ୍ରହ
୪- ସଂସ୍କାର ସଙ୍ଗୀତାବଳୀ
୫- ଖଡ଼ୁବାବୁ ଓ ଚଷାଭାଇ
୬- ଆରୋଗ୍ୟ ବିଧାନ
୭- ଟୋକା ହୃଦୟର ଟୀକା
୮- ସତ୍ୟାର୍ଥ ପ୍ରକାଶ
୯- ମିତାବ୍ରର ସ୍ୱାସ୍ଥ୍ୟରକ୍ଷା
୧୦- ମୋ ମାତୃଭାଷା
୧୧- କୋଇଲି ମାଳିକା
୧୨- ନିବେଦନ
୧୩- ଶଶିକଳା ପରିଣୟ ବା ବିଧବା ବିବାହ ନାଟକ
୧୪- ପଞ୍ଚାମୃତ
୧୫- ଅଛୁଆ·କାନ୍ଦ
୧୬- ଜାତି ଗୀତ
୧୭- ଆର୍ଯ୍ୟ ଧର୍ମ
୧୮- ପୁତ୍ର ଶୋକ
୧୯- କଳିର ପତ୍ର
୨୦- ପଞ୍ଚ ଦେବତା
୨୧- ଦତ୍ତାବଳି
୨୨- ଗୃହାଶ୍ରମ
୨୩- ନୀତି ଧର୍ମ
୨୪- ସୂକ୍ତ ସଂଗ୍ରହ
୨୫- ଶୁକ୍ଳପକ୍ଷ ପଦ୍ୟ
୨୬- ଗୋଧନ

ଏତଦ୍ ବ୍ୟତୀତ ଆଉ କେତେ ଖଣ୍ଡ ପ୍ରକାଶିତ ବହୁ ଦୁଷ୍ପ୍ରାପ୍ୟ

—*—